# ଆମ ଦେଶର
# ପରିବେଶର ଭବିଷ୍ୟତ

ଡକ୍ଟର ଦେବକାନ୍ତ ମିଶ୍ର



# ଆମ ଦେଶର ପରିବେଶର ଭବିଷ୍ୟତ


ମୁଖ୍ୟ ଉପଦେଷ୍ଟା :
ଶ୍ରୀ ରଘୁନାଥ ପ୍ରସାଦ ମିଶ୍ର

ପ୍ରକାଶକ :
ଶ୍ରୀ ନୃସିଂହ ପ୍ରସାଦ ମିଶ୍ର
କଟକ ଷ୍ଟୁଡ଼େଣ୍ଟସ୍ ଷ୍ଟୋର
ବାଲୁବଜାର, କଟକ - ୭୫୩ ୦୦୨

ପ୍ରଚ୍ଛଦପଟ : ଶ୍ରୀ ଶଶିକାନ୍ତ ରାଉତ

ପ୍ରଥମ ସଂସ୍କରଣ : ମାର୍ଚ୍ଚ, ୨୦୦୦

ମୁଦ୍ରାକର :
ଆନନ୍ଦ ଗ୍ରାଫିକ୍ସ୍ ଓ କୁଇକ୍ ପ୍ରିଣ୍ଟର୍ସ୍, କଟକ

ମୂଲ୍ୟ : ବନ୍ଧାଇ : ଟ ୪୦.୦୦ ମାତ୍ର
ସାଧା : ଟ ୩୦.୦୦ ମାତ୍ର

AAMA DESHARA PARIBESHARA BHABISHYATA

Writer :
Dr. Debakanta Mishra

Publisher :
Sri N. P Misra
Cuttack Students' Store
Balu Bazar, Cuttack - 753 002

Principal Adviser :
Sri R. P. Misra

First Edition : March, 2000

Printers
Anand Graphics and **Quick Printers** Cuttack

Price : Deluxe : Rs 40.00/-
Popular : Rs. 30.00/-

# PROLOGUE

"India has rich democratic and entrepreneurial traditions and has, in the face of emerging rural crisis, thrown up numerous outstanding examples of communities struggling to improve their environment, some of which have shown through the dint of their hard work and persistence that dealing with 'ecological poverty' is, in fact, the starting point of dealing with 'economic poverty'. There is, therefore, no dearth of opportunities that can & should be seized to get rid of poverty and illiteracy, improve living standards, and maintain a balance between want and waste. However, the urban scenario shows a deepening crisis. We not only have to learn how to be good 'Gandhian in poverty' but also a good 'Gandhian in wealth'. This can be done. All that it needs is a caring heart and a mind aware of its neighbours and natural surroundings."

Citizen's Fifth Report on the State of India's Environment.

# ସୂଚୀପତ୍ର





# ୧

## ଆମ ଦେଶର ପରିବେଶ :
### ଅତୀତର ଅଭିଜ୍ଞତା, ସାମ୍ପ୍ରତିକ ଅବସ୍ଥା ଓ ଭବିଷ୍ୟତର ରୂପରେଖ

ଆମ ଦେଶର ପରିବେଶର ଅବସ୍ଥା ସମ୍ପର୍କରେ "Citizen's Fifth Report On the State of India's Environment" ଶିରୋନାମାରେ ତଥା ଅନୀଲ ଅଗ୍ରୱାଲ୍ ଓ ସୁନୀତା ନାରାୟଣଙ୍କ ସମ୍ପାଦନାରେ ଗୋଟିଏ ତଥ୍ୟାଶ୍ରୟୀ ତଥା ସମୟୋପଯୋଗୀ ସଙ୍କଳନ ସଦ୍ୟ ପ୍ରକାଶିତ ହୋଇଛି । ଅତୀତରେ ପ୍ରକାଶିତ ଏହି ପ୍ରକାର ସଙ୍କଳନଗୁଡ଼ିକ ଆମ୍ଭମାନଙ୍କୁ ଆମ ଦେଶର ପରିବେଶର ଅବସ୍ଥା ସମ୍ପର୍କରେ ଯେଉଁ ପ୍ରକାର ବ୍ୟାପକ ସର୍ବେକ୍ଷଣ ଭିତ୍ତିକ ପର୍ଯ୍ୟାପ୍ତ ତଥ୍ୟାଶ୍ରୟୀ ଜ୍ଞାନ ଯୋଗାଇଥିଲା; ଏବଂ ଆମ ଦେଶର ପରିବେଶ-ବିଜ୍ଞାନୀ ତଥା ପରିବେଶ-ସଚେତନ ଜନସାଧାରଣଙ୍କୁ ପରିବେଶର ସୁରକ୍ଷା ଓ ସନ୍ତୁଳନ ସମ୍ପର୍କରେ ନିଜ ନିଜ ଦାୟିତ୍ୱଗୁଡ଼ିକୁ ଠିକଣା ଭାବରେ ସମ୍ପାଦନ କରିବା ଉଦ୍ଦେଶ୍ୟରେ ସଚେତନ କରାଇଥିଲା, ଏଥର ମଧ୍ୟ ତାହାର ବ୍ୟତିକ୍ରମ ଘଟିନାହିଁ ।

ଆଲୋଚ୍ୟ ରିପୋର୍ଟରେ ସ୍ପଷ୍ଟ ଭାବରେ ଦର୍ଶାଇ ଦିଆଯାଇଛି ଯେ ଆମ ଦେଶରେ ଗଣତନ୍ତ୍ର ଓ ଶିଳ୍ପୋଦ୍ୟୋଗକେନ୍ଦ୍ରିକ ପରମ୍ପରା ଅତି ପ୍ରାଚୀନ କାଳରୁ ପ୍ରତିଷ୍ଠିତ ହୋଇଛି । ଗ୍ରାମାଞ୍ଚଳର ଜନସାଧାରଣ ବିଭିନ୍ନ ପ୍ରକାର ସଙ୍କଟମୟ ପରିସ୍ଥିତିର ସମ୍ମୁଖୀନ ହେବା ଅବସରରେ ନିଜ ନିଜ ବୁଦ୍ଧି ଓ କଠୋର ପରିଶ୍ରମ ଫଳରେ ଉପଗତ ସମସ୍ୟାଗୁଡ଼ିକର ସମାଧାନ ଦିଗରେ ପ୍ରଶଂସନୀୟ ପଦକ୍ଷେପଗୁଡ଼ିକୁ କାର୍ଯ୍ୟକାରୀ କରାଇଛନ୍ତି । ସ୍ୱାଧୀନତା-ଉତ୍ତର ଭାରତବର୍ଷର ଗ୍ରାମାଞ୍ଚଳରେ ଏହି ସୁସ୍ଥ ପରମ୍ପରା ଏବେ ମଧ୍ୟ ଅବ୍ୟାହତ ରହିଛି । ଗ୍ରାମାଞ୍ଚଳ ବାସିନ୍ଦାମାନେ ନିଜ ନିଜ ଅଭିଜ୍ଞତା ଓ ଅବବୋଧ ବଳରେ ଅବଧାରିତ ହୋଇଛନ୍ତି ଯେ ଆମ ଦେଶର ଗ୍ରାମାଞ୍ଚଳରୁ ଅର୍ଥନୈତିକ ଦାରିଦ୍ର୍ୟର ଅପସାରଣ ଘଟାଇବାକୁ ହେଲେ ସର୍ବାଦୌ ପର୍ଯ୍ୟାବରଣୀୟ ଦାରିଦ୍ର୍ୟର ଅପସାରଣ ଦିଗରେ ବିହୀତ ପଦକ୍ଷେପଗୁଡ଼ିକୁ କାର୍ଯ୍ୟକାରୀ କରାଯିବା ବିଧେୟ । ଜୈବବସ୍ତୁ ନିର୍ଭରଶୀଳ

ଗ୍ରାମାଞ୍ଚଳର ବାସିନ୍ଦାମାନଙ୍କ ଖାଦ୍ୟ, ବାସଗୃହ ଓ ପାନୀୟ ଜଳ ପ୍ରଭୃତି ଜୀବନ ଧାରଣର ନ୍ୟୂନତମ ଚାହିଦାଗୁଡ଼ିକର ପୂରଣ ପାଇଁ ଉପଯୁକ୍ତ ସୁବିଧା ସୃଷ୍ଟି କରାଯିବା ସମ୍ଭବ ହେଲେ ସେମାନେ ନିଜ ନିଜ ଜୀବନଧାରଣର ଗୁଣାତ୍ମକ ମାନକୁ ଆବର୍ଦ୍ଧିତ କରାଇବା ପାଇଁ ନବୀକରଣକ୍ଷମତା (innovation) ଅବଲମ୍ବନରେ ନୂଆ ନୂଆ କୌଶଳଗୁଡ଼ିକୁ ଆପଣାଇ କରିପାରିବେ । ପରିବେଶର ସୁପରିଚାଳନା ବ୍ୟାପାରରେ ସେମାନଙ୍କ ପ୍ରତ୍ୟକ୍ଷ ସହଯୋଗ ପ୍ରତି ଅଗ୍ରାଧିକାର ଆରୋପ କରାଯିବା ଦ୍ୱାରା ପରିବେଶୀୟ ସନ୍ତୁଳନ ଅବ୍ୟାହତ ରହିବା ସଙ୍ଗେ ସଙ୍ଗେ ସେମାନଙ୍କ ଆର୍ଥିକ ସ୍ଥିତି ମଧ୍ୟ କ୍ରମଶଃ ସ୍ୱଚ୍ଛଳ ହୋଇ ପାରିବ । ଏପରି ଶୁଭକାରୀ ପରିବେଶର ସର୍ଜନା ସମ୍ଭବ ହେଲେ ନିରକ୍ଷରତା ଓ କୁସଂସ୍କାରଗୁଡ଼ିକର ଅପସାରଣ ଦିଗରେ ସେହି ଗ୍ରାମାଞ୍ଚଳର ବାସିନ୍ଦାମାନେ ହିଁ ଠିକଣା ପଦକ୍ଷେପଗୁଡ଼ିକୁ କାର୍ଯ୍ୟକାରୀ କରାଇବା ଦିଗରେ ସ୍ୱତଃସ୍ଫୂର୍ତ୍ତ ମାର୍ଗରେ ଆଗ୍ରହୀ ହେବେ ଏବଂ ଜୀବନ ଯାପନ କରିବା ଅବସରରେ ନିଜ ନିଜର ଅଭାବଗୁଡ଼ିକୁ ପୂରଣ କରିବା ବ୍ୟାପାରରେ ତଥା ଆବର୍ଜନାଗୁଡ଼ିକୁ ସୃଷ୍ଟିକରିବା କ୍ଷେତ୍ରରେ ସନ୍ତୁଳନ ରକ୍ଷା କରିବାକୁ ସମର୍ଥ ହେବେ । ଦରିଦ୍ର ବାସିନ୍ଦାମାନଙ୍କ ଜୀବନ ଧାରଣର ମାନରେ କ୍ରମୋନ୍ନତି ଘଟାଇବା ପାଇଁ ଜାତିର ଜନକ ମହାତ୍ମା ଗାନ୍ଧୀ ଯେଉଁ ପରାମର୍ଶଗୁଡ଼ିକୁ ପ୍ରଦାନ କରିଛନ୍ତି, ସେଗୁଡ଼ିକୁ ଯଥାବିଧି ପାଳନ କରାଯାଏ, ଯଦି ବିତ୍ତଶାଳୀ ବା ସ୍ୱଚ୍ଛଳ ପରିବାରର ଲୋକମାନେ ମଧ୍ୟ ତାଙ୍କ ଉପଦେଶ ଓ ପରାମର୍ଶଗୁଡ଼ିକୁ ପାଳନ କରିବାକୁ ସମର୍ଥ ହୁଅନ୍ତି, ଏବଂ ଆମ ଦେଶର ବୌଦ୍ଧିକ ଓ ସାମାଜିକ ପରିବେଶ ଗାନ୍ଧିଜୀଙ୍କ ଚିନ୍ତାଧାରାଗୁଡ଼ିକର ବାସ୍ତବ ରୂପାୟନ ଦିଗରେ ଅନୁକୂଳ ହୋଇପାରନ୍ତା, ତାହାହେଲେ ଆମେ ପରିବେଶୀୟ ଦୁର୍ଗତି ଯୋଗୁଁ ସୃଷ୍ଟ ସଙ୍କଟମୟ ପରିସ୍ଥିତିଗୁଡ଼ିକ କବଳରୁ ନିଜ ନିଜକୁ ରକ୍ଷା କରିବାକୁ ସମର୍ଥ ହୋଇପାରନ୍ତା । ଏହା ସଙ୍ଗେ ସଙ୍ଗେ ଆମ ଦାୟାଦମାନଙ୍କ ଭବିଷ୍ୟତକୁ ଉଜ୍ଜ୍ୱଳମୟ କରିପାରନ୍ତେ । ଏଥିପାଇଁ ଦେଶବାସୀଙ୍କ ମାନସିକ ସଂସ୍ଥିତିରେ ବା mind-setରେ ଯୁଗାନ୍ତକାରୀ ପରିବର୍ତ୍ତନର ଆବଶ୍ୟକତା ଉପୁଜୁଛି । ସମାଜର ସବୁ ଶ୍ରେଣୀର ବାସିନ୍ଦାମାନଙ୍କ ସୁଖଶାନ୍ତିମୟ ଜୀବନଯାପନ ପ୍ରତି ଯଦି ପ୍ରତ୍ୟେକେ ସହନଶୀଳ ଓ ସମ୍ବେଦନଶୀଳ ଆଚରଣ ପ୍ରଦର୍ଶନ କରିବାକୁ ସମର୍ଥ ହୁଅନ୍ତି ଏବଂ ଜନମାନସରେ ପରିବେଶ ପ୍ରତି ଅନୁରାଗ ସୃଷ୍ଟି କରାଯିବା ସମ୍ଭବ ହୁଅନ୍ତା, ତାହାହେଲେ ଆମ ଦେଶର ଭୌତିକ ପରିବେଶର ସୁରକ୍ଷା ଓ ସନ୍ତୁଳନ ପାଇଁ ଆମେ ଠିକଣା ପଦକ୍ଷେପଗୁଡ଼ିକୁ ସମୟୋଚିତ ମାର୍ଗରେ କାର୍ଯ୍ୟକାରୀ କରାଇବାକୁ ସମର୍ଥ ହୋଇପାରିବା ।

ଏବଂବିଧ ଭାବାବେଗ ହିଁ ଏହି ସଙ୍କଳନର ପୁରୋଭାଗରେ ନିମ୍ନ ମତେ ସ୍ପଷ୍ଟଭାବରେ ଲିପିବଦ୍ଧ ହୋଇଛି :

"India has rich democratic and entrepreneural traditions and has in the face of emerging rural crisis thrown up numerous outstanding examples of communities struggling to improve their environment, some of which have shown through the dint of their hard work and persistence that dealing with 'ecological poverty' is, in fact, the starting point of dealing with 'economic poverty'. There is, therefore, no dearth of opportunities that can and should be seized to get rid of poverty and illiteracy, improve living standards and maintain a balance between want and waste. However, the urban scenario shows a deepening crisis. We not only have to learn how to be good 'Gandhian in poverty' but also a 'good Gandhian in wealth'. This can be done. All that it needs is a caring heart and a mind aware of its neighbours and natural surroundings."

ଏହି ରିପୋର୍ଟଟିରେ ସହରାଞ୍ଚଳର ପରିସ୍ଥିତି ଦିନକୁ ଦିନ ଉଦ୍‌ବେଗଜନକ ହେଉଥିବା ସମ୍ପର୍କରେ ପର୍ଯ୍ୟାପ୍ତ ତଥ୍ୟାଶ୍ରୟୀ ସୂଚନା ଦିଆଯାଇଛି । ଗ୍ରାମାଞ୍ଚଳ ଭଳି ସହରାଞ୍ଚଳଗୁଡ଼ିକର କ୍ରମବର୍ଦ୍ଧମାନ ବାସିନ୍ଦାମାନଙ୍କ ପରିବେଶୀୟ ସମସ୍ୟାଗୁଡ଼ିକର ପ୍ରତିକାର ଦିଗରେ କୌଣସି ସନ୍ତୋଷପ୍ରଦ ବ୍ୟବସ୍ଥା କାର୍ଯ୍ୟକାରୀ କରାଯିବା ସମ୍ଭବ ହେଉନାହିଁ । ଏଣୁ, ରିପୋର୍ଟଟିରେ ସ୍ପଷ୍ଟଭାବରେ ସୂଚାଇ ଦିଆଯାଇଛି ଯେ, ଅବସ୍ଥା ଅସମ୍ଭାଳ ହେବା ପରେ ହିଁ ପ୍ରବଳ ଜନମତର ଚାପରେ ନଗରାଞ୍ଚଳର ପରିବେଶୀୟ ସମସ୍ୟାରାଜିର ସମାଧାନ ଦିଗରେ ଠିକଣା ବ୍ୟବସ୍ଥାଗୁଡ଼ିକୁ କାର୍ଯ୍ୟକାରୀ କରାଯିବା ସମ୍ଭବ ହେବ । ମାତ୍ର ସେତେବେଳକୁ ନିଶ୍ଚିତ ଭାବରେ ଆମ ଦେଶର ଧନ ଜୀବନର ପ୍ରଭୂତ କ୍ଷତି ଘଟିଥିବ ।

ଆମ ଦେଶର ପରିବେଶର ଭବିଷ୍ୟତକୁ ନିରାପଦ ରଖିବା ପାଇଁ ଏହି ରିପୋର୍ଟରେ ନିମ୍ନ ସୂଚିତ ଦୁଇଟି ଦିଗ ପ୍ରତି ବିଶେଷ ପ୍ରାଧାନ୍ୟ ଆରୋପିତ ହୋଇଛି :

(କ) ଗୋଟିଏ ଅଞ୍ଚଳର ବାସିନ୍ଦାମାନଙ୍କ ପ୍ରତ୍ୟକ୍ଷ ସହଯୋଗ ବଳରେ ପରିବେଶୀୟ ସମସ୍ୟାଗୁଡ଼ିକର ସମାଧାନ କରାଯିବା ସଙ୍ଗେ ସଙ୍ଗେ ଯଦି

ସେମାନଙ୍କ ଅର୍ଥନୈତିକ ପ୍ରଗତିର ପଥକୁ ସୁଗମ୍ୟ କରାଯାଏ, ତାହାହେଲେ ଜନସାଧାରଣ ଆପେ ଆପେ ପରିବେଶର ସୁରକ୍ଷା ଓ ସନ୍ତୁଳନ ଦିଗରେ ସଚେତନ ହେବେ । ବିଂଶ ଶତାବ୍ଦୀର ଅଷ୍ଟମ ଓ ନବମ ଦଶକରେ ଆମ ଦେଶର କେତେକ ଗ୍ରାମାଞ୍ଚଳରେ ବେସରକାରୀ ସେବାକାରୀ ଅନୁଷ୍ଠାନଗୁଡ଼ିକର ସହଯୋଗ ବଳରେ ଯେଉଁ ପ୍ରଶଂସନୀୟ ପଦକ୍ଷେପଗୁଡ଼ିକୁ ସେଠାକାର ବାସିନ୍ଦାମାନଙ୍କ ପ୍ରତ୍ୟକ୍ଷ ସହଯୋଗ ବଳରେ କାର୍ଯ୍ୟକାରୀ କରାଯାଇଛି । ତଦ୍ୱାରା ସ୍ଥିତାବସ୍ଥାରେ ଲକ୍ଷଣୀୟ କ୍ରମୋନ୍ନତି ଘଟିବା ସମ୍ଭବ ହୋଇଛି । ତଦନୁରୂପ କାର୍ଯ୍ୟାନୁଷ୍ଠାନଗୁଡ଼ିକୁ ଯଦି ସାରା ଦେଶର ବିଭିନ୍ନ ଅଞ୍ଚଳରେ ଆଞ୍ଚଳିକ ସ୍ୱାତନ୍ତ୍ର୍ୟ ପରିପ୍ରେକ୍ଷୀରେ ଭିନ୍ନ ଭିନ୍ନ ମାର୍ଗରେ କାର୍ଯ୍ୟକାରୀ କରାଯିବା ସମ୍ଭବ ହୁଅନ୍ତା, ତାହାହେଲେ ଆଉ ଗୋଟିଏ ବା ଦୁଇଟି ଦଶକ ମଧ୍ୟରେ ଆମ ଦେଶର ଗ୍ରାମାଞ୍ଚଳରୁ ଦାରିଦ୍ର୍ୟର ଅପସାରଣ ଘଟାଇବା ମଧ୍ୟ ସମ୍ଭବ ହୁଅନ୍ତା ।

(ଖ) ଅପରପକ୍ଷେ, ଆମ ଦେଶର ନଗରାଞ୍ଚଳମାନଙ୍କରେ ପରିବେଶୀୟ ପ୍ରଦୂଷଣ, ଟ୍ରାଫିକ୍‌ର ଭିଡ଼ ଓ ଆବର୍ଜନାଗୁଡ଼ିକ ଯୋଗୁଁ ଜନସାଧାରଣଙ୍କ ଜୀବନ ଯାପନ ଦିନକୁ ଦିନ ଦୁର୍ବିସହ ହୋଇଯିବ । ବୁଦ୍ଧିଜୀବୀମାନଙ୍କ ଜରିଆରେ ତଥା ପ୍ରସାର ମାଧ୍ୟମଗୁଡ଼ିକ ସାହାଯ୍ୟରେ ପରିବେଶର ସୁରକ୍ଷା ଓ ସନ୍ତୁଳନ ଦିଗରେ ପ୍ରଚାରଧର୍ମୀ କାର୍ଯ୍ୟାନୁଷ୍ଠାନଗୁଡ଼ିକୁ କାର୍ଯ୍ୟକାରୀ କରାଯାଉଥିଲେ ମଧ୍ୟ ବାସ୍ତବ କ୍ଷେତ୍ରରେ ସଙ୍କଟ ସୃଷ୍ଟିକାରୀ ସମସ୍ୟାଗୁଡ଼ିକର ସମାଧାନ ଦିଗରେ କୌଣସି ସନ୍ତୋଷପ୍ରଦ ପଦକ୍ଷେପକୁ ଶୃଙ୍ଖଳିତ ତଥା ଧାରାବାହିକ ମାର୍ଗରେ କାର୍ଯ୍ୟକାରୀ କରାଇବା ସମ୍ଭବ ହେଉନାହିଁ । ଏ ଦିଗରେ ରାଜନୈତିକ ମନୋବଳର ଦାରୁଣ ଅଭାବ ପରିଲକ୍ଷିତ ହେଉଛି, ଏବଂ ପ୍ରଶାସନିକ ବ୍ୟବସ୍ଥା ଏଥିପ୍ରତି ଉଦାସୀନ ରହିଛିଛି । କେବଳ ବିଚାର ବିଭାଗର ବା ନ୍ୟାୟାଳୟଗୁଡ଼ିକର ସାମୟିକ ପଦକ୍ଷେପଗୁଡ଼ିକ ଯୋଗୁଁ ଯତ୍‌ସାମାନ୍ୟ ଯେଉଁ କିଛି ପ୍ରତିକାରମୂଳକ ବ୍ୟବସ୍ଥା ସମ୍ପର୍କରେ ନିର୍ଦ୍ଦେଶ ଦିଆଯାଉଛି, ସେଗୁଡ଼ିକୁ ମଧ୍ୟ ବିଧିବଦ୍ଧ ଭାବରେ କାର୍ଯ୍ୟକାରୀ କରାଯିବା ସମ୍ଭବ ହେଉନାହିଁ । ଗ୍ରାମାଞ୍ଚଳର ଅବସ୍ଥାରେ କ୍ରମୋନ୍ନତି ଘଟିବା ସମ୍ପର୍କରେ ଆଜହୁଁ ଯେଉଁ ଶୁଭ ସଙ୍କେତଗୁଡ଼ିକ ପ୍ରତିଭାତ ହେଉଛି, ସହରାଞ୍ଚଳ କ୍ଷେତ୍ରରେ ତାହାର ଅଙ୍କୁରୋଦ୍‌ଗମ ସମ୍ଭବ ହୋଇନାହିଁ । ସମସ୍ୟାଗୁଡ଼ିକୁ ଠିକଣା ଭାବରେ ଉତ୍‌ଥାପନ କରାଯିବା ପୂର୍ବକ ନବୀକରଣ-କ୍ଷମତା ଅବଲମ୍ବନରେ

ସେଗୁଡ଼ିକର ସମାଧାନ ଦିଗରେ କର୍ମତତ୍ପରତାର ଦାରୁଣ ଅଭାବ ପରିଲକ୍ଷିତ ହେଉଛି । ଏଣୁ ନିକଟ ଭବିଷ୍ୟତରେ ନଗରାଞ୍ଚଳର ପରିବେଶ ସମ୍ପର୍କରେ ଉପଯୁକ୍ତ ଯୋଜନାଗୁଡ଼ିକର ପ୍ରଣୟନ ଓ ସେଗୁଡ଼ିକର କାର୍ଯ୍ୟକାରିତା ଦିଗରେ ଅଗ୍ରାଧିକାର ଆରୋପ କରାଯିବା ହିଁ ଏକାନ୍ତ ବାଞ୍ଛନୀୟ ବୋଧ ହେଉଛି ।

ଆମ ଦେଶର ଗୋଟିଏ ଅଗ୍ରଗଣ୍ୟ ତଥା ଆନ୍ତଃରାଷ୍ଟ୍ରୀୟ ସୁଖ୍ୟାତିସମ୍ପନ୍ନ ସେବାକାରୀ ଅନୁଷ୍ଠାନ (NGO) ଭାବରେ 'ସେଣ୍ଟର ଫର୍ ସାଇନ୍ସ ଆଣ୍ଡ ଏନ୍‌ଭାଇରନମେଣ୍ଟ (CSE)'ର ବୌଦ୍ଧିକ ଓ ପ୍ରୟୋଗାତ୍ମକ କାର୍ଯ୍ୟକ୍ରମଗୁଡ଼ିକ ଦେଶବାସୀମାନଙ୍କୁ ବରାବର ପରିବେଶୀୟ ସମସ୍ୟାରାଜି ଓ ସେଗୁଡ଼ିକର ପ୍ରତିକାର ସମ୍ପର୍କରେ ସଚେତନ କରାଇବା ପାଇଁ ସମୟୋଚିତ ପଦକ୍ଷେପଗୁଡ଼ିକୁ ଗ୍ରହଣ କରୁଛନ୍ତି । ଏହି ସଙ୍କଳନଟିକୁ ପାଠ କରିବା ଦ୍ୱାରା ଜଣା ପଡୁଛି ଯେ ସରକାରୀ ଉଦ୍ୟମ ବ୍ୟତିରେକେ ଯଦି ସାରା ଦେଶର ବିଭିନ୍ନ ଅଞ୍ଚଳରେ ପ୍ରତିଷ୍ଠିତ ସେବାକାରୀ ଅନୁଷ୍ଠାନଗୁଡ଼ିକ ଜନସାଧାରଣଙ୍କ ପର୍ଯ୍ୟାବରଣୀୟ ଦାରିଦ୍ର୍ୟ ଓ ପରିବେଶୀୟ ପ୍ରଦୂଷଣର ପ୍ରତିକାର ଦିଗରେ ସବୁ ଶ୍ରେଣୀର ବୁଦ୍ଧିଜୀବୀ ଓ କର୍ମକୁଶଳୀ ବ୍ୟକ୍ତିମାନଙ୍କ ସହଯୋଗ ବଳରେ ଉନ୍ନୟନମୂଳକ ବ୍ୟାପାରଗୁଡ଼ିକର କାର୍ଯ୍ୟକାରିତା କ୍ଷେତ୍ରରେ ସ୍ଥାନୀୟ ଜନସାଧାରଣଙ୍କୁ ଫଳପ୍ରଦ ମାର୍ଗରେ ସାମିଲ କରାଇ ପାରନ୍ତି, ତାହାହେଲେ ଏକବିଂଶ ଶତାବ୍ଦୀର ଆଦ୍ୟ ପାଦରେ ଆମ ଦେଶର ବାସିନ୍ଦାମାନେ ନିଶ୍ଚିତଭାବରେ ଗୋଟିଏ ପରିପୋଷଣକାରୀ ସମାଜର (Sustainable Society) ଭିତ୍ତି ପ୍ରସ୍ତରକୁ ସୁଦୃଢ଼ କରାଇବାକୁ ସମର୍ଥ ହେବେ ।



# ୨

## ଗ୍ରାମାଞ୍ଚଳର ପରିସ୍ଥିତି

ହିମାଳୟ ପର୍ବତମାଳାର ତଳି ଅଞ୍ଚଳରେ ସଂଘଟିତ ହୋଇଥିଲା ଐତିହାସିକ 'ଚିପ୍‌କୋ' ଆନ୍ଦୋଳନ ଏହି ଶତାବ୍ଦୀର ସପ୍ତମ ଦଶକରେ । ଏଠାକାର ବାସିନ୍ଦାମାନେ ଠିକାଦାରମାନଙ୍କ ଦ୍ୱାରା ଜଙ୍ଗଲାଞ୍ଚଳରୁ କାଠ କାଟିନେବାର ପ୍ରକ୍ରିୟାକୁ ବିରୋଧ କରିଥିଲେ । ବିଚକ୍ଷଣ ଅହିଂସ ମାର୍ଗରେ ସ୍ଥାନୀୟ ବାସିନ୍ଦାମାନେ ବୃକ୍ଷଗୁଡ଼ିକୁ ଜାବୁଡ଼ି ଧରିବାରୁ ଠିକାଦାରମାନଙ୍କ କଳ ଲଙ୍ଗଳ କାଠ କାଟିବାରୁ ନିବୃତ୍ତ ହେଲା । ଜୈବବସ୍ତୁ ନିର୍ଭରଶୀଳ ସେଠାକାର ବାସିନ୍ଦାମାନେ ସମଗ୍ର ଦେଶବାସୀଙ୍କୁ ପ୍ରଭାବଶାଳୀ ମାର୍ଗରେ ଜଣାଇ ଦେଲେ ଯେ ଗରିବ ଲୋକମାନେ ହିଁ ବିଶେଷଭାବରେ ପରିବେଶ ନିର୍ଭରଶୀଳ ହୋଇଛନ୍ତି । ଜଙ୍ଗଲଗୁଡ଼ିକୁ କାଟିଦେବା ଦ୍ୱାରା ସେମାନଙ୍କର ଯେଉଁ ଅପୂରଣୀୟ ତଥା ଦାରୁଣ କ୍ଷତି ଘଟିବ, ତାହାକୁ ଭରଣା କରିଦେବା କେବେହେଲେ ସମ୍ଭବ ହେବ ନାହିଁ । ଏହି ପଥ ପ୍ରଦର୍ଶନକାରୀ ଆନ୍ଦୋଳନ ହିଁ ସାରା ଦେଶର ବିଭିନ୍ନ ଅଞ୍ଚଳରେ ଜଙ୍ଗଲାଞ୍ଚଳର ଉଚ୍ଛେଦ ବିରୋଧରେ ଜନ ଚେତନାର ଜାଗରଣ ଘଟାଇଲା ।

ଅଷ୍ଟ ଦଶକର ପ୍ରାରମ୍ଭ କାଳ ବେଳକୁ ବିଶେଷଜ୍ଞମାନେ ଜଣାଇ ଦେଲେ ଯେ ଆମ ଦେଶର ମୋଟ ସ୍ଥଳଭାଗର ଏକ ତୃତୀୟାଂଶଠାରୁ ପ୍ରାୟ ଅର୍ଦ୍ଧେକ ଭାଗ ପର୍ଯ୍ୟନ୍ତ ବର୍ଜିତ ଭୂମିରେ (waste land) ପରିଣତ ହୋଇଛି । ୧୯୮୫ ମସିହାରେ ଆମ ଦେଶର ତତ୍କାଳୀନ ପ୍ରଧାନମନ୍ତ୍ରୀ ଶ୍ରୀ ରାଜୀବ ଗାନ୍ଧୀ ଗୋଟିଏ ଜନ ଆନ୍ଦୋଳନର ସମ୍ୟକ୍ କାର୍ଯ୍ୟକାରିତା ବଳରେ ଏହି ବର୍ଜିତ ଭୂମିଗୁଡ଼ିକୁ ବ୍ୟବହାରଯୋଗ୍ୟ ଜମିରେ ପରିଣତ କରାଇବାକୁ ଚାହିଁଲେ । ମାତ୍ର ସେ ଯେଉଁ ପ୍ରକାରେ ଏ ଦିଗରେ ସମୟୋଚିତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାକୁ ଚାହିଁଥିଲେ, ଅମଲାତନ୍ତ୍ର ତାହାକୁ ଠିକଣା ଭାବରେ ବୁଝି ପାରିଲେ ନାହିଁ । ଏଣୁ କୌଣସି ରାଷ୍ଟ୍ରାୟତ୍ତ ଯୋଜନାର କାର୍ଯ୍ୟକାରିତା ବଳରେ ଲକ୍ଷଣୀୟ ମାର୍ଗରେ ବର୍ଜିତ ଜମିଗୁଡ଼ିକର ଉନ୍ନୟନ କରାଯିବା ସମ୍ଭବ ହେଲା ନାହିଁ । ମାତ୍ର ଇତ୍ୟବସରରେ

ସେବାକାରୀ ସଙ୍ଗଠନଗୁଡ଼ିକ ସ୍ଥାନୀୟ ଜନସାଧାରଣଙ୍କ ପ୍ରତ୍ୟକ୍ଷ ସହଯୋଗ ବଳରେ ସୁଖୋମାଜରି ଓ ରାଲେଗାନ ସିଦ୍ଧି ନାମକ ଦୁଇଟି ସ୍ଥାନରେ ଶୋଚନୀୟ ଭାବରେ ଅଧୋଗତିର ସମ୍ମୁଖୀନ ହୋଇଥିବା ଜମିଗୁଡ଼ିକର ଉନ୍ନୟନ ବ୍ୟାପାରରେ ଅସାମାନ୍ୟ କୃତିତ୍ୱ ପ୍ରଦର୍ଶନ କଲେ । ସେଠାକାର ଜନସାଧାରଣଙ୍କ ପଥ ପ୍ରଦର୍ଶନକାରୀ ଉଦ୍ୟମ ଯୋଗୁଁ ପ୍ରମାଣିତ ହୋଇ ପାରିଲା ଯେ ପର୍ଯ୍ୟାବରଣୀୟ ଦାରିଦ୍ର୍ୟର ସମାଧାନ ଦିଗରେ ଯତ୍ନବାନ୍ ହେବା ଦ୍ୱାରା ହିଁ ଅର୍ଥନୈତିକ ଦାରିଦ୍ର୍ୟର ଅପସାରଣ ସମ୍ଭବ ।

ସପ୍ତଦଶକର ସୁଖୋମାଜରି ଓ ରାଲେଗାନ ସିଦ୍ଧିର ସଫଳତା ଅଚିରେ ସାରା ଦେଶର ଜନସାଧାରଣଙ୍କ ଦୃଷ୍ଟି ଆକର୍ଷଣ କଲା । ଅଷ୍ଟଦଶକର ମଧ୍ୟଭାଗ ବେଳକୁ ତରୁଣ ଭାରତ ସଂଘ (TBS) ନାମକ ଗୋଟିଏ ବେସରକାରୀ ସଙ୍ଗଠନ ରାଜସ୍ଥାନର ଅରଓ୍ୱାଲ୍ ଜିଲ୍ଲାରେ ପାରମ୍ପରିକ ଜଳ ସଂରକ୍ଷଣର କୌଶଳଗୁଡ଼ିକୁ ସ୍ଥାନୀୟ ଜନସାଧାରଣଙ୍କ ପ୍ରତ୍ୟକ୍ଷ ସହଯୋଗ ବଳରେ ପୁନର୍ବାର କାର୍ଯ୍ୟକାରୀ କରାଇଲେ । ପ୍ରାକୃତିକ ସମ୍ବଳଗୁଡ଼ିକର ପରିଚାଳନା ବ୍ୟାପାର ସହ ଜଡ଼ିତ ବେସରକାରୀ ସେବାକାରୀ ସଙ୍ଗଠନଗୁଡ଼ିକ ନବମଦଶକ ବେଳକୁ ଏପରି ଭାବରେ ସ୍ଥାନୀୟ ବାସିନ୍ଦାମାନଙ୍କ ଜରିଆରେ ଆମ ଦେଶର ବିଭିନ୍ନ ଅଞ୍ଚଳର ପର୍ଯ୍ୟାବରଣୀୟ ଦାରିଦ୍ର୍ୟର ଅପସାରଣ ଦିଗରେ ପ୍ରଶଂସନୀୟ କାର୍ଯ୍ୟାନୁଷ୍ଠାନଗୁଡ଼ିକୁ ଠିକଣା ଭାବରେ କାର୍ଯ୍ୟକାରୀ କରାଇବାକୁ ସମର୍ଥ ହେଲେ । ଏବେ TBS ର କର୍ମକର୍ତ୍ତାମାନେ ପ୍ରାୟ ୫୦୦ଟି ଗ୍ରାମର ଉନ୍ନୟନ ସହିତ ଜଡ଼ିତ ହୋଇଛନ୍ତି । ପଞ୍ଜାବ ଓ ହରିଆନାର ସରକାରୀ କର୍ତ୍ତୃପକ୍ଷ ବିଭିନ୍ନ ଗ୍ରାମରେ ସୁଖୋମାଜରି ନମୁନାର ପ୍ରତିଫଳନ ଘଟାଇବା ଦିଗରେ ଯତ୍ନବାନ୍ ହୋଇଛନ୍ତି । ମଧ୍ୟପ୍ରଦେଶର ମୁଖ୍ୟମନ୍ତ୍ରୀ ଦିଗ୍‌ବିଜୟ ସିଂହ ତାଙ୍କ ରାଜ୍ୟରେ ଥିବା ୭୧୨୫୬ଟି ଗ୍ରାମ ମଧ୍ୟରୁ ପ୍ରାୟ ଶତକଡ଼ା ୧୦ ଭାଗ ଗ୍ରାମରେ ସୁଖୋମାଜରି ନମୁନାଟିର ପୁନରାବୃତ୍ତି ଘଟାଇବା ଦିଗରେ ଅଗ୍ରାଧିକାର ଆରୋପ କରିଛନ୍ତି । ଏତଦ୍ୱାରା ଆମ ଦେଶର ମୋଟ ସ୍ଥଳଭାଗର ପ୍ରାୟ ଶତକଡ଼ା ୧ ଭାଗ ଜମିକୁ ଉତ୍ପାଦନକ୍ଷମ ତଥା ଆୟ ଯୋଗାଣକାରୀ ଜମିରେ ପରିଣତ କରାଯିବା ସମ୍ଭବ ହୋଇଛି । ଏଠାରେ ଆମେ ଲକ୍ଷ୍ୟ କରିବାର କଥା ଯେ ବେସରକାରୀ ସେବାକାରୀ ଅନୁଷ୍ଠାନଗୁଡ଼ିକ ଜନସାଧାରଣଙ୍କ କାର୍ଯ୍ୟଦକ୍ଷତାକୁ ଯେପରି ଭାବରେ ଶୁଭକାରୀ ମାର୍ଗରେ କାର୍ଯ୍ୟକାରୀ କରାଇବାକୁ ସମର୍ଥ ହୋଇଛନ୍ତି, ସରକାରୀ କର୍ତ୍ତୃପକ୍ଷ ମଧ୍ୟ ସେହି ଫଳପ୍ରଦ ମାର୍ଗର ଅନୁଗାମୀ ହେବାକୁ କୁଣ୍ଠା ବୋଧ କରି ନାହାନ୍ତି । ଏତଦ୍ୱାରା ଅମଲାତନ୍ତ୍ର ଜନସାଧାରଣଙ୍କୁ ଯଥାର୍ଥ କ୍ଷମତାର୍ପଣ କରିବା ସମ୍ଭବ ହୋଇଛି ।

ଦୁଇ ଦଶକ ମଧ୍ୟରେ ରାଲେଗାନ ସିଦ୍ଧି ଭଳି ଗୋଟିଏ ଅବହେଳିତ ଓ ଅନୁନ୍ନତ ଅଞ୍ଚଳର ବର୍ଜିତ ଜମିଗୁଡ଼ିକୁ ଶସ୍ୟଶ୍ୟାମଳା କରାଯିବା ସମ୍ଭବ ହୋଇଛି । ଏହି ଅଞ୍ଚଳ ଏବେ ଆର୍ଥିକ ସ୍ୱଚ୍ଛଳତା ଦୃଷ୍ଟିରୁ ପଞ୍ଜାବର ଯେ କୌଣସି ସ୍ୱଚ୍ଛଳ ଗ୍ରାମ ସହିତ ସମକକ୍ଷ ହୋଇଛି । ଏଥିପାଇଁ ଜଳସମ୍ପଦକୁ ଅତ୍ୟଧିକ ପରିମାଣରେ ବ୍ୟବହାର କରାଯିବାର ଆବଶ୍ୟକତା ଉପୁଜି ନାହିଁ; କିମ୍ବା ଜମିଗୁଡ଼ିକରେ କୃତ୍ରିମ ରାସାୟନିକ ସାର ପ୍ରୟୋଗ କରାଯାଉ ନାହିଁ ।

ତଥାପି ଅନେକ ସନ୍ଦେହୀ ଓ ଦୋଷଦର୍ଶୀ ବ୍ୟକ୍ତି ଗୋଟିଏ ପ୍ରଶ୍ନ ଉତ୍‌ଥାପନ କରିବାର ଅବକାଶ ରହଛି ଯେ, ଏଠାରେ କେବଳ କତିପୟ ବେସରକାରୀ ତଥା ରାଷ୍ଟ୍ରାୟତ୍ତ ସଙ୍ଗଠନର ସଫଳତା ପ୍ରଦାନକାରୀ କୃତିତ୍ୱଗୁଡ଼ିକ ସମ୍ବନ୍ଧରେ ଅବତାରଣା କରାଯାଇଛି; ମାତ୍ର ଏମାନଙ୍କ କର୍ତ୍ତୃକ ବହୁସଂଖ୍ୟକ ଯୋଜନା ନିଷ୍ଫଳ ହୋଇ ନାହିଁ କି ?

ଏପରି ପ୍ରଶ୍ନର ଉତ୍ତର ମଧ୍ୟ ନାସ୍ତିସୂଚକ ହୋଇଛି । ଦିଲ୍ଲୀସ୍ଥିତ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଇକୋନୋମିକ୍ ଗ୍ରୋଥ୍‌ର ସର୍ବେକ୍ଷଣକାରୀମାନେ ଏବେ ସୂଚାଇଛନ୍ତି ଯେ, ଏ ଧରଣର ବହୁ ଯୋଜନା ଜନସାଧାରଣଙ୍କ ସବିଶେଷ ଦୃଷ୍ଟି ଆକର୍ଷଣ କରି ନ ଥିଲେ ମଧ୍ୟ ବିଶେଷ ଫଳପ୍ରସୂ ହୋଇଛି । ସବୁଠାରୁ ଉଲ୍ଲେଖନୀୟ ତଥା ତାତ୍ପର୍ଯ୍ୟପୂର୍ଣ୍ଣ ବିଷୟ ହେଉଛି ଯେ ଏପରି ଉନ୍ନୟନକାମୀ ଯୋଜନାଗୁଡ଼ିକର କାର୍ଯ୍ୟକାରିତା ଫଳରେ ପର୍ଯ୍ୟାବରଣୀୟ ଦୁର୍ଗତି ଯୋଗୁଁ ଗ୍ରାମାଞ୍ଚଳଠାରୁ ସହରାଞ୍ଚଳକୁ ବସବାସ ପାଇଁ ଚାଲି ଯାଉଥିବା ଲୋକମାନଙ୍କ ସଂଖ୍ୟାରେ ଯଥେଷ୍ଟ ହ୍ରାସ ଘଟିଛି; କେତେକ ଅଞ୍ଚଳରେ ଗ୍ରାମାଞ୍ଚଳର ବାସିନ୍ଦାମାନେ ସହରକୁ ଚାଲିଯିବାର ପ୍ରକ୍ରିୟା ପ୍ରାୟ ବନ୍ଦ ହୋଇଯାଇଛି । ସହରାଞ୍ଚଳମାନଙ୍କରେ ଗ୍ରାମାଞ୍ଚଳରୁ ଚାଲି ଆସୁଥିବା ନିଃସମ୍ବଳ ଜନସାଧାରଣ ହିଁ ଅପନ୍ତରା ଓ ଅସ୍ୱାସ୍ଥ୍ୟକର ସ୍ଥାନମାନଙ୍କରେ ବସତି ସ୍ଥାପନ କରୁଛନ୍ତି । ଏପରି ଭାବରେ ସୃଷ୍ଟି ହେଉଥିବା ସ୍ଲମ୍‌ଗୁଡ଼ିକର ସଂଖ୍ୟା ଓ ପରିବ୍ୟାପ୍ତିରେ ମଧ୍ୟ ଦିନକୁ ଦିନ ଅଭିବୃଦ୍ଧି ଘଟୁଛି । ପୁଣି,ଏହି ଦରିଦ୍ର ଲୋକମାନଙ୍କୁ ସହରାଞ୍ଚଳର ବିତ୍ତବଶାଳୀ ଓ କ୍ଷମତାଶାଳୀ ବ୍ୟକ୍ତିମାନେ ବିଭିନ୍ନ ପ୍ରକାରେ ଶୋଷଣ କରୁଛନ୍ତି । ଏପରିକି ଏହି ପରିବାରଗୁଡ଼ିକରେ ଦାରିଦ୍ର୍ୟର ତାଡ଼ନାରେ ଶିଶୁ-ଶ୍ରମିକମାନଙ୍କ ସଂଖ୍ୟା ମଧ୍ୟ ବଢ଼ିବାରେ ଲାଗିଛି । ଯଦି ଉପଯୁକ୍ତ କର୍ମପନ୍ଥା ଅବଲମ୍ବନରେ ତଥା ସ୍ଥାନୀୟ ଗ୍ରାମାଞ୍ଚଳର ବାସିନ୍ଦାମାନଙ୍କ ସହଯୋଗ ବଳରେ ପରିବେଶର ସୁରକ୍ଷା ଓ ସନ୍ତୁଳନ ସମ୍ଭବ ହୁଏ; ଏବଂ ଜନସାଧାରଣ ପର୍ଯ୍ୟାବରଣୀୟ ବିଭବରାଜିର ପରିପୋଷଣକାରୀ ମାର୍ଗରେ ସଦୁପଯୋଗ କରିବାକୁ ସମର୍ଥ ହୁଅନ୍ତି, ତାହାହେଲେ ଦାରିଦ୍ର୍ୟର ତାଡ଼ନାରେ ସେମାନେ ସହରାଞ୍ଚଳକୁ ଚାଲି ଆସିବାର ତଥା ସେଠାରେ ମଧ୍ୟ ଦୁର୍ବିସହ ଜୀବନ ବିତାଇବାର ଅବକାଶ ରହିବ ନାହିଁ ।

ବ୍ରିଟିଶ ସରକାର ପ୍ରାୟ ୨୦୦ ବର୍ଷ ବ୍ୟାପୀ ଶାସନ ଚଳାଇବା ଅବସରରେ ଆମ ଦେଶର ପ୍ରାକୃତିକ ସମ୍ବଳଗୁଡ଼ିକୁ ସ୍ୱାର୍ଥାନ୍ୱେଷୀ ମାର୍ଗରେ ଲୁଣ୍ଠନ କରିବାକୁ ପ୍ରଲୋଭିତ ହୋଇଥିଲେ । ଏହି ବ୍ୟାପାରକୁ ସେମାନଙ୍କ ସ୍ୱାର୍ଥାନୁକୂଳ ମାର୍ଗରେ ପରିଚାଳନା କରିବା ଉଦ୍ଦେଶ୍ୟରେ ସେମାନେ ଅମଲାତନ୍ତ୍ରର ଭିତ୍ତି ପ୍ରସ୍ତରକୁ ଆମ ଦେଶରେ ସୁଦୃଢ଼ କରିଥିଲେ । ଦେଶ ସ୍ୱାଧୀନ ହେବା ପରେ ସେହି ଅମଲାତନ୍ତ୍ରର କର୍ମ-ପରିସର ଆହୁରି ବହୁଗୁଣିତ ହେଲା । ଅମଲାତନ୍ତ୍ରର ନିରଙ୍କୁଶ କ୍ଷମତା ପୂର୍ବବତ୍ ସାରା ଦେଶରେ ବଳବତ୍ତର ରହିଲା । ସମୟକ୍ରମେ ପ୍ରଶାସନିକ ଚକ୍ରାନ୍ତ ଅବଲମ୍ବନରେ ଏହି ଶ୍ୱେତହସ୍ତୀରୂପେ କ୍ରିୟାଶୀଳ ଅମଲାତନ୍ତ୍ର ଅନଭିଜ୍ଞ ଓ ଦୁର୍ନୀତି ପରାୟଣ ରାଜନୈତିକ ନେତୃବର୍ଗଙ୍କୁ ନିଜର ବଶୀଭୂତ କରାଇବା ପୂର୍ବକ ଜନସାମାଜରେ ନିଜର ପ୍ରତିପତ୍ତି ବିସ୍ତାର କରିବାକୁ ସମର୍ଥ ହେଲା । ଜନସାଧାରଣଙ୍କୁ ଉନ୍ନୟନମୂଳକ ବ୍ୟାପାରଗୁଡ଼ିକଠାରୁ ଦୂରେଇ ରଖିବା ସଙ୍ଗେ ସଙ୍ଗେ ସେମାନଙ୍କ ଉପରେ କ୍ଷମତା ଜାହିର କରିବା ହିଁ ହେଲା ଅମଲାତନ୍ତ୍ରର କର୍ମାଭିମୁଖ୍ୟ । ଏବଂବିଧ ଏକଦିଶୀ ଅମଲାତାନ୍ତ୍ରିକ କ୍ରିୟାଶୀଳତା ସ୍ୱାଧୀନତା-ଉତ୍ତର ଭାରତବର୍ଷରେ ପ୍ରାୟ ଅର୍ଦ୍ଧ-ଶତାବ୍ଦୀରୁ ଊର୍ଦ୍ଧ୍ୱକାଳ ବଳବତ୍ତର ରହିବା ପରେ ଏବେ ଲକ୍ଷ୍ୟ କରାଯାଉଛି ଯେ ଜନସାଧାରଣ ଅମଲାତନ୍ତ୍ରର ଏକାଧିପତ୍ୟ ବିରୋଧରେ ଉପଯୁକ୍ତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାକୁ ଆଗ୍ରହୀ ହେଉଛନ୍ତି । ଏଣୁ ବିଗତ ଦୁଇ ଦଶନ୍ଧି ମଧ୍ୟରେ ରାଷ୍ଟ୍ରାୟତ୍ତ ତଥା ସେବାକାରୀ ସଂଗଠନଗୁଡ଼ିକ ଜରିଆରେ ଉଲ୍ଲିଖିତ ମାର୍ଗରେ ଜନସାଧାରଣଙ୍କ ପ୍ରତ୍ୟକ୍ଷ ସହଯୋଗ ବଳରେ ପର୍ଯ୍ୟାବରଣର ପରିପୋଷଣ ତଥା ଦାରିଦ୍ର୍ୟର ଅପସାରଣ ଦିଗରେ ଯେଉଁ ପଦକ୍ଷେପଗୁଡ଼ିକ କାର୍ଯ୍ୟକାରୀ କରାଯାଇଛି, ଐତିହାସିକ ଦୃଷ୍ଟିରୁ ତାହାକୁ ଏକ ଯୁଗାନ୍ତକାରୀ ଘଟଣାପ୍ରବାହ ଭାବରେ ବିଚାର କରିବା ହିଁ ସମୀଚୀନ ବୋଧ ହେଉଛି । ଜନସାଧାରଣ ଜନ ଆନ୍ଦୋଳନ ବଳରେ ପରିଚାଳିତ ସଫଳ ଯୋଜନାଗୁଡ଼ିକ ସଂପର୍କରେ ଅବଗତ ହେବା ଦ୍ୱାରା ହିଁ ପ୍ରଚଳିତ ପ୍ରଶାସନିକ ବ୍ୟବସ୍ଥାର ବିକେନ୍ଦ୍ରୀକରଣ ଦିଗରେ ସଫଳ ପଦକ୍ଷେପଗୁଡ଼ିକୁ କାର୍ଯ୍ୟକାରୀ କରିବାକୁ ସମର୍ଥ ହେବେ ଏବଂ କାଳକ୍ରମେ ଜନମତର ଚାପରେ ହିଁ କ୍ଷମତାର ଯଥାର୍ଥ ବିକେନ୍ଦ୍ରୀକରଣ ପାଇଁ ଅମଲାତନ୍ତ୍ରର କର୍ମାଭିମୁଖ୍ୟରେ ଶୁଭକାରୀ ପରିବର୍ତ୍ତନ ଘଟାଇବା ସମ୍ଭବ ହେବ ।

ପ୍ରାସଙ୍ଗିକତା ପରିପ୍ରେକ୍ଷୀରେ ଏଠାରେ ମଧ୍ୟପ୍ରଦେଶ ଓ ଓଡ଼ିଶାର ଏକାଭଳି ସମସ୍ୟା ପ୍ରପୀଡ଼ିତ ଦୁଇଟି ଅଞ୍ଚଳର ସାଂପ୍ରତିକ ସ୍ଥିତାବସ୍ଥା ସମ୍ପର୍କରେ ତୁଳନାତ୍ମକ ବିଚାର ଚଳାଇବା ଯୁକ୍ତିଯୁକ୍ତ ବୋଧ ହେଉଛି । ଜଳ-ବିଭାଜିକାଗୁଡ଼ିକର (water-sheds) ସର୍ଜନା ଓ ସଦୁପଯୋଗ ବଳରେ ମରୁଡ଼ି ପ୍ରପୀଡ଼ିତ ମଧ୍ୟପ୍ରଦେଶର

ଝାବୁଆ ଓ ଓଡ଼ିଶାର କଳାହାଣ୍ଡି ଜିଲ୍ଲାର ଉନ୍ନୟନ ପାଇଁ ଆନୁଷଙ୍ଗିକ ଅବସ୍ଥାପନାଗୁଡ଼ିକର ସର୍ଜନା ଦିଗରେ ଗୁରୁତ୍ୱ ଆରୋପ କରାଗଲା । ଆମେ ଜାଣୁ ଯେ କଳାହାଣ୍ଡିକୁ ଆମ ଦେଶର ଏକ ଉତ୍କଟ ଦାରିଦ୍ର୍ୟ ପ୍ରପୀଡ଼ିତ ଅଞ୍ଚଳ ଭାବରେ ବିଜ୍ଞାପିତ କରାଯାଉଛି । ଏଠାକାର ବାସିନ୍ଦାମାନେ ପେଟ ବିକଳରେ ନିଜ ପିଲାମାନଙ୍କୁ ଶସ୍ତାରେ ବିକି ଦେଉଥିବାର ଚାଞ୍ଚଲ୍ୟକର ସମ୍ବାଦ ପ୍ରକାଶିତ ହେବା ପରେ ଏକାଧିକ ପ୍ରଧାନମନ୍ତ୍ରୀଙ୍କ ସମେତ ଦଳମତ ନିର୍ବିଶେଷରେ ରାଜନୈତିକ ନେତୃବର୍ଗ ଏହି ଅଞ୍ଚଳଟିକୁ ବାରମ୍ବାର ପରିଦର୍ଶନ କରିଛନ୍ତି । ଝାବୁଆରେ ମଧ ତଦନୁରୂପ ପରିସ୍ଥିତିର ସମ୍ମୁଖୀନ ହୋଇ ସ୍ଥାନୀୟ ବାସିନ୍ଦାମାନେ ଶସ୍ୟଭଣ୍ଡାର ଓ ଦୋକାନମାନଙ୍କରୁ ଖାଦ୍ୟ ଲୁଟିନେବାକୁ ବାଧ ହୋଇଥିଲେ । ଉଭୟ ଅଞ୍ଚଳର ପର୍ଯ୍ୟାବରଣୀୟ ଦୁର୍ଗତି ସମଧର୍ମୀ ହୋଇଥିବାର ଜଣାଗଲା । ମରୁଡ଼ିର ପ୍ରତିକାର ପାଇଁ ଉଭୟ ଅଞ୍ଚଳରେ ଜଳ ବିଭାଜିକା ଯୋଜନାଗୁଡ଼ିକୁ କାର୍ଯ୍ୟକାରୀ କରାଗଲା । ଗୋଟିଏ ଦଶନ୍ଧି ପରେ ଲକ୍ଷ୍ୟ କରାଗଲା ଯେ ଝାବୁଆଠାରେ ପର୍ଯ୍ୟାବରଣ ପରିପୋଷଣକାରୀ ମାର୍ଗରେ କ୍ରମୋନ୍ନତ ହୋଇଛି । ସେଠାକାର ରାଜ୍ୟ ସରକାର ଜନସାଧାରଣଙ୍କ ପ୍ରତ୍ୟକ୍ଷ ସହଯୋଗ ଓ ପରିଚାଳନା ଅବଲମ୍ବନରେ ବିଭିନ୍ନ କାର୍ଯ୍ୟକ୍ରମଗୁଡ଼ିକୁ ଅତୀବ ସଫଳତାର ସହିତ କାର୍ଯ୍ୟକାରୀ କରାଇଛନ୍ତି । ମାତ୍ର ପ୍ରଚୁର ଅର୍ଥଶ୍ରାଦ୍ଧ ଓ ଅମଲାତାନ୍ତ୍ରିକ କାରସାଦୀ ସତ୍ତ୍ୱେ ଓଡ଼ିଶାର କଳାହାଣ୍ଡି ଜିଲ୍ଲାର ପର୍ଯ୍ୟାବରଣୀୟ ଦୁର୍ଗତିରେ କୌଣସି ପ୍ରଭାବଶାଳୀ ପରିବର୍ତ୍ତନ ଘଟିବା ପରିବର୍ତ୍ତେ ସେଠାକାର ଅବସ୍ଥା ପୂର୍ବାପେକ୍ଷା ଆହୁରି ଶୋଚନୀୟ ହୋଇଛି ।

ଝାବୁଆ ଭଳି କହାଲାଣ୍ଡି ମଧ ଗୋଟିଏ ପାହାଡ଼ିଆ ଆଦିବାସୀ ଅଧୁଷିତ ଅଞ୍ଚଳ । ୧୯୯୦ ମସିହାରେ ଏହି ଜିଲ୍ଲାର ପ୍ରାୟ ଶତକଡ଼ା ୬୭ ଭାଗ ଅଞ୍ଚଳ ଜଙ୍ଗଲ ଦ୍ୱାରା ଆଚ୍ଛାଦିତ ହୋଇଥିଲା । ଅଷ୍ଟାଦ୍ଶ ଓ ଉନବିଂଶ ଶତାବ୍ଦୀରେ ଏହି ଜିଲ୍ଲାର ବିଭିନ୍ନ ଅଞ୍ଚଳରେ ପୁଷ୍କରିଣୀଗୁଡ଼ିକୁ ଜଳ ଯୋଗାଣକାରୀ ଜାଲ ଭାବରେ ନିର୍ମାଣ କରାଯାଇଥିଲା । ମାତ୍ର ଇତ୍ୟବସରରେ ଜଙ୍ଗଲଗୁଡ଼ିକୁ କାଟି ଦିଆଯିବା ଯୋଗୁଁ, ଏବଂ ଏହି ଜଳ ଭଣ୍ଡାରଗୁଡ଼ିକର ଯତ୍ନ ନିଆ ନ ଯିବା ଯୋଗୁଁ, ଏ ଅଞ୍ଚଳରେ ମରୁଡ଼ିର ପ୍ରକୋପ ଦିନକୁ ଦିନ ଉତ୍କଟ ଆକାର ଧାରଣ କଲା । ଏହି ଅଞ୍ଚଳର ପର୍ଯ୍ୟାବରଣୀୟ ଦୁର୍ଗତିର ଅନ୍ୟତମ ମୁଖ୍ୟ କାରଣ ହେଉଛି ମୃତ୍ତିକା କ୍ଷୟ । ସର୍ବେକ୍ଷଣରୁ ଜଣା ପଡ଼ିଛି ଯେ, ପ୍ରତି ବର୍ଷ ଏହି ଜିଲ୍ଲାରେ ହେକ୍ଟର ପିଛା ୪୮ ଟନ୍ ମୃତ୍ତିକାର କ୍ଷୟ ଘଟୁଛି ଏବଂ ସରକାରୀ ଅଟକଳ ଅନୁଯାୟୀ କେବଳ ମୃତ୍ତିକା କ୍ଷୟ ଯୋଗୁଁ ବର୍ଷ ପିଛା ଏହି ଜିଲ୍ଲାଟି ୮୦୦୦ କୋଟି ଟଙ୍କା ହରାଉଛି । ରାଜ୍ୟ ସରକାରଙ୍କ ମୃତ୍ତିକା ସଂରକ୍ଷଣ ବିଭାଗ ମୃତ୍ତିକା କ୍ଷୟର ନିରାକରଣ ପାଇଁ

ବିଗତ ୧୪ ବର୍ଷ ମଧ୍ୟରେ ୯୦ କୋଟି ଟଙ୍କାରୁ ଊର୍ଦ୍ଧ୍ୱ ଅର୍ଥ ବିନିମୟରେ ଏହି ଅଞ୍ଚଳରେ ୧୪୦୦ଟି ଜଳ-ବିଭାଜିକାର ନିର୍ମାଣ ଦାୟିତ୍ୱ ନିଜ ହାତକୁ ନେଇଛନ୍ତି । ପ୍ରାୟ ୫୦୦ ହେକ୍ଟର ପରିମିତ ଅଞ୍ଚଳକୁ ଜଳ ଯୋଗାଇ ଦେଇପାରିବା ଭଳି ୫୮ଟି ଜଳ-ବିଭାଜିକା ପ୍ରକଳ୍ପକୁ ଏବେ କାର୍ଯ୍ୟକାରୀ କରାଯାଉଛି । ଏହି ଅନୁ-ଜଳ ବିଭାଜିକାଗୁଡ଼ିକର (micro-watersheds) ନିର୍ମାଣ ପାଇଁ ସରକାର ପ୍ରାୟ ୧୪.୫କୋଟି ଟଙ୍କାର ବ୍ୟୟଭାର ବହନ କରିଛନ୍ତି । ମାତ୍ର ଏବଂବିଧ ଜନକଲ୍ୟାଣକାରୀ ବ୍ୟାପାରଗୁଡ଼ିକ ସହିତ ସ୍ଥାନୀୟ ବାସିନ୍ଦାମାନଙ୍କୁ ଫଳପ୍ରଦ ମାର୍ଗରେ ସାମିଲ କରାଯାଇ ନ ଥିବାରୁ ଏଗୁଡ଼ିକ ଆଶାନୁରୂପ ମାର୍ଗରେ ଫଳପ୍ରଦ ହେଉନାହିଁ । ଏତଦ୍ୱାରା କଳାହାଣ୍ଡିର ପର୍ଯ୍ୟାବରଣର ଦୁର୍ଗତିକୁ ରୋକିଦେବା କିମ୍ବା ସେଠାକାର ବାସିନ୍ଦାମାନଙ୍କ ସାମାଜିକ-ଅର୍ଥନୈତିକ ଅବସ୍ଥାରେ କ୍ରମୋନ୍ନତି ଘଟାଇବା ସଂଭବ ହୋଇନାହିଁ । ଏହି ଘଟଣାକୁ ଉପଲକ୍ଷ୍ୟ କରି 'କାଉନସିଲ ଅଫ୍ ପ୍ରୋଫେସନାଲ ସୋସିଆଲ ୱାର୍କର୍ସ'ର କର୍ତ୍ତୃପକ୍ଷ 'State of Orissa's Environment' ଶୀର୍ଷକ ଏକ ରିପୋର୍ଟରେ ଲେଖିଛନ୍ତି : ''But without effective people's participation.......these programmes have not been able to bring eco-regeneration and improvement in the socio-economic condition of the people.'' ।

ସମକାଳୀନଭାବରେ ମଧ୍ୟପ୍ରଦେଶର ରାଜ୍ୟ ସରକାର ଝାବୁଆ ଅଞ୍ଚଳରେ ଜଳ ବିଭାଜିକାଗୁଡ଼ିକର ଗଠନ ଓ ସଦୁପଯୋଗ ଦିଗରେ ସ୍ଥାନୀୟ ଜନସାଧାରଣଙ୍କୁ କର୍ମପ୍ରବଣ କରାଇବା ଉଦ୍ଦେଶ୍ୟରେ ବିଭିନ୍ନ ଅନୁଷ୍ଠାନଗୁଡ଼ିକୁ ପ୍ରତିଷ୍ଠା କରିଛନ୍ତି । ଓଡ଼ିଶାରେ କଳାହାଣ୍ଡିର ବାସିନ୍ଦାମାନଙ୍କ କର୍ମପ୍ରବଣତାର ସଦୁପଯୋଗ ଦିଗରେ ଏପରି କୌଣସି ଆନୁଷ୍ଠାନିକ ବ୍ୟବସ୍ଥା ବିଧିବଦ୍ଧ ଭାବରେ କାର୍ଯ୍ୟକାରୀ ହୋଇନାହିଁ ।

ସେହି ମଧ୍ୟପ୍ରଦେଶର ଜନ ଆନ୍ଦୋଳନ ପ୍ରବର୍ତ୍ତିତ ଆଉ ଏକ ସଫଳ ପ୍ରୟାସ ସଂପର୍କରେ ଏଠାରେ ଚୁମ୍ବକୀୟ ସୂଚନା ପ୍ରଦାନ କରିବା ପ୍ରାସଙ୍ଗିକ ବୋଧ ହେଉଛି । ପ୍ରବୀଣ ସମାଜସେବୀ ଆନ୍ନା ହାଜାରେଙ୍କ ଗାନ୍ଧିଜୀଙ୍କ ଚିନ୍ତାଧାରାଶ୍ରୟୀ କାର୍ଯ୍ୟାନୁଷ୍ଠାନଗୁଡ଼ିକ ଦ୍ୱରା ପ୍ରଭାବିତ ହୋଇ ଦିଗ୍‌ବିଜୟ ସିଂହ ନିଜ ରାଜ୍ୟରେ ପରିବେଶର ସୁପରିଚାଳନା ପାଇଁ ସ୍ଥାନୀୟ ଜନସାଧାରଣଙ୍କ ସହଯୋଗ ଲୋଡ଼ିଥିଲେ । ୧୯୯୭ ମସିହାରେ ତାଙ୍କ ଦ୍ୱାରା ଏପରି ଶୁଭକାରୀ ପଦକ୍ଷେପ ଗ୍ରହଣ କରାଯିବାର ଫଳ ସ୍ୱରୂପ ମରୁଡ଼ି ପ୍ରପୀଡ଼ିତ ପିପଲିପଦାରେ ଗୋଟିଏ ଆଶ୍ଚର୍ଯ୍ୟଜନକ ଘଟଣା ଘଟିଲା । ସେହି ବର୍ଷ ଗ୍ରୀଷ୍ମ ଋତୁରେ ଲକ୍ଷ୍ୟ କରାଗଲା ଯେ ଏହି ଗ୍ରାମର ସବୁ କୂପ ଜଳପୂର୍ଣ୍ଣ ଅବସ୍ଥାରେ ରହିଛି । ଜଳାଭାବ ପରିବର୍ତ୍ତେ ଜଳର

ଆତିଶଯ୍ୟ ହିଁ ଆଖପାଖ ପାଞ୍ଚଟି ଗ୍ରାମର ଚାଷୀମାନଙ୍କୁ ୫.୩ ହେକ୍ଟର ଜମିରେ କୂପ ସେଚିତ ଜଳ ଅବଲମ୍ବନରେ ଫସଲ ଅମଳ କରିବାର ସାମର୍ଥ୍ୟ ଯୋଗାଇ ପାରିଛି । ସ୍ଥାନୀୟ ପୁରୁଖା ଲୋକମାନଙ୍କ ବକ୍ତବ୍ୟ ଅନୁଯାୟୀ ପ୍ରାୟ ୫୦ ବର୍ଷ ପୂର୍ବରୁ ଗ୍ରୀଷ୍ମ ଋତୁରେ ମଧ୍ୟ କୂପଗୁଡ଼ିକର ଜଳ ଶୁଖି ଯାଉ ନ ଥିଲା । ଇତ୍ୟବସରରେ ମନୁଷ୍ୟକୃତ ପର୍ଯ୍ୟାବରଣୀୟ ଦୁର୍ଗତି ହିଁ ଜଳାଭାବ ରୂପୀ ଉତ୍କଟ ସମସ୍ୟାର ସୂତ୍ରପାତ ଘଟାଇଥିଲା । ଲକ୍ଷ୍ୟ କରାଯାଉଛି ଯେ ୧୨୩୩ ଜଣ ବାସିନ୍ଦା ଏହି ଗ୍ରାମରେ ଜୀବନ ଧାରଣର ଚାହିଦାଗୁଡ଼ିକୁ ପୂରଣ କରିବାକୁ ସମର୍ଥ ହୋଇଛନ୍ତି । ସୌରଶକ୍ତି ଦ୍ୱାରା ଏହି ଗ୍ରାମକୁ ବିଦ୍ୟୁତ୍ ଶକ୍ତି ଯୋଗାଇ ଦେବା ସଂଭବ ହୋଇଛି । ଗ୍ରାମର ମହିଳାମାନେ ସ୍ୱଳ୍ପ ସଞ୍ଚୟ ଯୋଜନାଗୁଡ଼ିକୁ କାର୍ଯ୍ୟକାରୀ କରାଇବା ପୂର୍ବକ ନିଜ ନିଜ ଆର୍ଥିକ ଅବସ୍ଥାରେ କ୍ରମୋନ୍ନତି ଘଟାଇବାକୁ ସମର୍ଥ ହୋଇଛନ୍ତି । ସର୍ବୋପରି, ୧୯୯୭ ମସିହାଠାରୁ ଏହି ଗ୍ରାମର କୌଣସି ବାସିନ୍ଦା ଜୀବିକା ଅନ୍ୱେଷଣ ପାଇଁ ସହରାଞ୍ଚଳକୁ ଚାଲିଯିବାକୁ ପସନ୍ଦ କରୁନାହାନ୍ତି ।

ସୁଖୋମାଜରି, ରାଲେଗାନ ସିଦ୍ଧି ଓ ମଧ୍ୟପ୍ରଦେଶର ମରୁଡ଼ି ପ୍ରପୀଡ଼ିତ ଅର୍ଦ୍ଧ-ଶୁଷ୍କ (semi-arid) ଅଞ୍ଚଳମାନଙ୍କରେ ବର୍ଷା ଜଳର ସଂରକ୍ଷଣ, ଜଳସେଚନ ପ୍ରକଳ୍ପଗୁଡ଼ିକର ସୁପରିଚାଳନା, କୃଷିର ସମୃଦ୍ଧି ସାଧନ ଏବଂ ଜଙ୍ଗଲାଞ୍ଚଳର ସଂରକ୍ଷଣ ଦିଗରେ ଯେଉଁ ପ୍ରକାର ଉନ୍ନୟନମୂଳକ କାର୍ଯ୍ୟକ୍ରମଗୁଡ଼ିକୁ ଯେପରିଭାବରେ କାର୍ଯ୍ୟକାରୀ କରାଯାଉଛି, ସାରା ଦେଶରେ ସର୍ବତ୍ର ତଦନୁରୂପ ପଦକ୍ଷେପଗୁଡ଼ିକୁ କାର୍ଯ୍ୟକାରୀ କରାଯିବା ସଂଭବ ନୁହେଁ । ପାହାଡ଼ ଓ ପାହାଡ଼ିଆ ଉପତ୍ୟକାଗୁଡ଼ିକୁ ଧାରଣ କରିଥିବା ଏବଂ ବର୍ଷକୁ ପ୍ରାୟ ୫୦୦-୬୦୦ ମିଲିମିଟରଠାରୁ ୧୦୦୦-୧୨୦୦ ମିଲିମିଟର ପର୍ଯ୍ୟନ୍ତ ବୃଷ୍ଟିପାତ ଘଟୁଥିବା ଅଂଚଳଗୁଡ଼ିକ ପାଇଁ ଏ ପ୍ରକାର ପଦକ୍ଷେପଗୁଡ଼ିକୁ ସେଠାକାର ଆଦିବାସୀମାନଙ୍କ ପ୍ରତ୍ୟକ୍ଷ ସହଯୋଗ ବଳରେ କାର୍ଯ୍ୟକାରୀ କରାଯିବା ସଂଭବ ହୋଇଛି । ଆମ ଦେଶର ସୁବିସ୍ତୃତ ସମଧର୍ମୀ ଅଞ୍ଚଳମାନଙ୍କରେ ଏ ପ୍ରକାର ଯୁଗାନ୍ତକାରୀ କାର୍ଯ୍ୟକ୍ରମଗୁଡ଼ିକୁ କାର୍ଯ୍ୟକାରୀ କରାଇବା ଦ୍ୱାରା ସେଠାକାର ସ୍ଥାନୀୟ ଜନସାଧାରଣଙ୍କ ଜୀବନ ଧାରଣର ଗୁଣାତ୍ମକ ମାନକୁ ନିଶ୍ଚିତ ଭାବରେ ଆବର୍ଦ୍ଧିତ କରାଯାଇ ପାରିବ ।

ମାତ୍ର ଅତୀବ ଶୁଷ୍କ ଅଞ୍ଚଳମାନଙ୍କରେ, ପାହାଡ଼ିଆ ଓ ସୁଉଚ୍ଚ ପାର୍ବତ୍ୟାଞ୍ଚଳର ଢାଲୁଦେଶମାନଙ୍କରେ ଓ ବନ୍ୟାପ୍ଲାବିତ ଅଞ୍ଚଳମାନଙ୍କରେ ବିକଳ୍ପ ବ୍ୟବସ୍ଥାଗୁଡ଼ିକୁ ଜନସାଧାରଣଙ୍କ କର୍ମକୁଶଳତାର ସଦୁପଯୋଗ ବଳରେ କାର୍ଯ୍ୟକାରୀ କରାଯିବାର ପ୍ରକୃଷ୍ଟ ସମୟ ଉପଗତ ହୋଇଛି । ଏପରି ଭିନ୍ନ ଭିନ୍ନ ପର୍ଯ୍ୟାବରଣର ପରିପୋଷଣ

ଓ କ୍ରମୋନ୍ନତି ବିଧାନ ପାଇଁ ଯୁଗାନ୍ତକାରୀ ବ୍ୟବସ୍ଥାଗୁଡ଼ିକର କାର୍ଯ୍ୟକାରିତା ଦିଗରେ ଅଦ୍ୟାବଧି କୌଣସି ପଦକ୍ଷେପ ଗ୍ରହଣ କରାଯିବା ସଂଭବ ହୋଇନାହିଁ । ଆମେ ଆଶା କରିବା ଯେ ପର୍ଯ୍ୟାବରଣର ସୁରକ୍ଷା ଓ ସଂତୁଳନ ପାଇଁ ବିହିତ ପଦକ୍ଷେପଗୁଡ଼ିକୁ କାର୍ଯ୍ୟକାରୀ କରାଯିବା ସଂଗେ ସଂଗେ ଏକବିଂଶ ଶତାବ୍ଦୀରେ ଗ୍ରାମାଞ୍ଚଳରୁ ଦାରିଦ୍ର୍ୟର ଅପସାରଣ ଘଟାଇବା ଦିଗରେ ମଧ୍ୟ ସମୁଚିତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯିବ ।

ପ୍ରଥମତଃ, ସୁଖୋମାଜରି-ରାଲେଗାନ ସିଦ୍ଧି ଓ ଝାବୁଆ ଭଳି ସମଧର୍ମୀ ଅଞ୍ଚଳମାନଙ୍କରେ ଏଠାରେ ପ୍ରଚଳିତ କର୍ମାଭିମୁଖ୍ୟକୁ ବିଧିବଦ୍ଧ ଭାବରେ କାର୍ଯ୍ୟକାରୀ କରାଯିବ ।

ଦ୍ୱିତୀୟତଃ, ଭିନ୍ନ ଭିନ୍ନ ପର୍ଯ୍ୟାବରଣ ବିଶିଷ୍ଟ ଅଞ୍ଚଳଗୁଡ଼ିକ ପାଇଁ ଭିନ୍ନ ଭିନ୍ନ ପ୍ରକାର ପ୍ରଗତିକାମୀ ବ୍ୟବସ୍ଥାଗୁଡ଼ିକୁ ବିକେନ୍ଦ୍ରୀକୃତ ମାର୍ଗରେ ତଥା ଜନସାଧାରଣଙ୍କ ପ୍ରତ୍ୟକ୍ଷ ସହଯୋଗ ବଳରେ କାର୍ଯ୍ୟକାରୀ କରାଯିବା ପାଇଁ ଯଥାଶୀଘ୍ର ଆନୁଷଙ୍ଗିକ ବ୍ୟବସ୍ଥାଗୁଡ଼ିକୁ ସକ୍ରିୟ କରାଯିବ ।

ଆମ ଦେଶ ଏକବିଂଶ ଶତାବ୍ଦୀରେ ଉଲ୍ଲିଖିତ ଦ୍ୱିବିଧ ପ୍ରକାରେ ପର୍ଯ୍ୟାବରଣର ସୁରକ୍ଷା ଓ ଦାରିଦ୍ର୍ୟର ଅପସାରଣ ପାଇଁ ଉପଯୁକ୍ତ ପନ୍ଥାଗଡ଼ିକୁ ଶୃଙ୍ଖଳିତ ଓ ଧାରାବାହିକ ମାର୍ଗରେ କାର୍ଯ୍ୟକାରୀ କରାଇବାକୁ ସମର୍ଥ ହେବ କି ? ବିଗତ ଦୁଇ ଦଶନ୍ଧିର ପ୍ରାରମ୍ଭିକ କ୍ରିୟାଶୀଳତାକୁ ଲକ୍ଷ୍ୟ କରିବା ଦ୍ୱାରା ଆମ୍ଭମାନଙ୍କଠାରେ ଆଶାବାଦୀ ମନୋଭାବର ପରିପ୍ରକାଶ ଘଟିବା ଅବଶ୍ୟ ସ୍ୱାଭାବିକ ବୋଧ ହେଉଛି । କ୍ଷମତାର୍ପଣ ବ୍ୟାପାରଟିକୁ ଉପଯୁକ୍ତ ଶିକ୍ଷା ଓ ତାଲିମପ୍ରାପ୍ତ ସ୍ଥାନୀୟ ବାସିନ୍ଦାମାନଙ୍କ ଦ୍ୱାରା କାର୍ଯ୍ୟକାରୀ କରାଯିବା ବ୍ୟାପାରଟି ପାଇଁ ଅତ୍ୟାବଶ୍ୟକ ହେଉଛି ଅମଲାତନ୍ତ୍ରର କର୍ମାଭିମୁଖ୍ୟରେ ଯୁଗାନ୍ତକାରୀ ପରିବର୍ତ୍ତନ । ଦୁର୍ଭାଗ୍ୟବଶତଃ, ଆଲୋଚ୍ୟ ରିପୋର୍ଟରୁ ଜଣା ପଡୁଛି ଯେ ଅମଲାତାନ୍ତ୍ରିକ ପ୍ରତିରୋଧ ହିଁ ଗ୍ରାମାଞ୍ଚଳରୁ ଦାରିଦ୍ର୍ୟର ଅପସାରଣ ଦିଗରେ ମୁଖ୍ୟ ପ୍ରତିବନ୍ଧକ ସାଜିବାର ଆଶଙ୍କାକୁ ଏଡ଼ି ହେଉନାହିଁ । ଉଦାହରଣ ସ୍ୱରୂପ, ସ୍ଥାନୀୟ ଜନସାଧାରଣଙ୍କ ପ୍ରଗାଢ଼ ଉଦ୍ୟମ ବଳରେ ସୁଖୋମାଜରିଠାରେ ଯେଉଁ ଜଙ୍ଗଲ ସୃଷ୍ଟି ହୋଇଛି ଆର୍ଥିକ ଦୃଷ୍ଟିରୁ ତାହାର ଆନୁମାନିକ ମୂଲ୍ୟ ପ୍ରାୟ ୯୦ କୋଟି ଟଙ୍କା ହେବ । ଏହିଁ ଜଙ୍ଗଲର ରକ୍ଷଣାବେକ୍ଷଣ ବ୍ୟାପାରରେ ଯଦି ଅମଲାତନ୍ତ୍ର ଗତାନୁଗତିକ ମାର୍ଗରେ ହସ୍ତକ୍ଷେପ କରେ, ତାହାହେଲେ ଏହାର ଅଧୋଗତିର ପଥ ନିଶ୍ଚିତ ଭାବରେ ସୁଗମ୍ୟ ହୋଇଯିବ । କାରଣ, ହରିଆଣା ରାଜ୍ୟରେ ଜଂଗଲଜାତ ଦ୍ରବ୍ୟଗୁଡ଼ିକର ବିତରଣ ବ୍ୟାପାରରେ ଯେଉଁ ନୀତି ପ୍ରଚଳିତ ହେଉଛି ତାହାର ସାହାଯ୍ୟ ନେଇ

ଗ୍ରାମବାସୀମାନଙ୍କୁ ଲୁଣ୍ଠନ କରିବା ଏକ ସହଜସାଧ ବ୍ୟାପାର । ଏପରି ଅବ୍ୟାପାରର ପ୍ରତିରୋଧ ପାଇଁ ଜନମତ ପ୍ରବର୍ତ୍ତିତ ଦୃଢ଼ ରାଜନୈତିକ ମନୋବଳର ଚାହିଦା ଉପୁଜୁଛି । ଲକ୍ଷ୍ୟ କରାଯାଉଛି ଯେ ମଧ୍ୟପ୍ରଦେଶ ଭଳି ହରିଆଣା ରାଜ୍ୟର ରାଜନୈତିକ ନେତୃବର୍ଗ ପର୍ଯ୍ୟାବରଣୀୟ ଦୁର୍ଗତିର ପ୍ରତିରୋଧ ପାଇଁ ତଥା ଗ୍ରାମାଞ୍ଚଳରୁ ଦାରିଦ୍ର୍ୟର ଅପସାରଣ ପାଇଁ ଠିକଣା ପଦକ୍ଷେପଗୁଡ଼ିକୁ କାର୍ଯ୍ୟକାରୀ କରାଇବାକୁ ଆଗ୍ରହୀ ହେଉନାହାନ୍ତି । ପୁଣି, ହରିଆଣାର ବୁଦ୍ଧିଜୀବୀମାନେ ବା ସେଠାକାର ସିଭିଲ ସୋସାଇଟି ରାଜନୈତିକ ନେତୃବର୍ଗଙ୍କ ସହିତ ଏହି ଗୁରୁତ୍ୱପୂର୍ଣ୍ଣ ବ୍ୟାପାର ସଂପର୍କରେ ଭାବ ବିନିମୟ କରିବାକୁ ମଧ ବିଶେଷ ଉତ୍ସାହ ପ୍ରଦର୍ଶନ କରୁନାହାନ୍ତି । ପ୍ରକୃତ ପକ୍ଷେ ଆମ ଦେଶରେ ବର୍ତ୍ତମାନ ଯଦି ସୁଖୋମାଜରି ବା ରାଲେଗାନ ସିଦ୍ଧିଠାରେ ସଂଘଟିତ ବିପ୍ଳବ ଭଳି ଲକ୍ଷ ଲକ୍ଷ ଜନ-ଆନ୍ଦୋଳନର ସୂତ୍ରପାତ ଘଟିପାରନ୍ତା, ତାହାହେଲେ ଆମ ଦେଶର ପର୍ଯ୍ୟାବରଣ କେନ୍ଦ୍ରିକ ଭବିଷ୍ୟତ ନିଶ୍ଚିତ ଭାବରେ ଉଜ୍ଜ୍ୱଳମୟ ହୁଅନ୍ତା ।

ଜମି-ଜଳ-ଜଙ୍ଗଲ ଭଳି ପ୍ରାକୃତିକ ବିଭବରାଜିର ସୁପରିଚାଳନା ସଂଭବ ହେବା ଦ୍ୱାରା ମହିଳାମାନଙ୍କୁ ଶିକ୍ଷିତ କରାଇବା ପାଇଁ ଅନୁକୂଳ ପରିବେଶ ସୃଷ୍ଟି ହେବ । ସାଂସ୍କୃତିକ ଓ ଅର୍ଥନୈତିକ କାରଣଗୁଡ଼ିକ ଯୋଗୁଁ ଗ୍ରାମାଞ୍ଚଳର ଝିଅମାନେ ବିଦ୍ୟାଳୟମାନଙ୍କରେ ଆନୁଷ୍ଠାନିକ ଶିକ୍ଷା ପ୍ରାପ୍ତ ହେବାରୁ ବଂଚିତା ହେଉଛନ୍ତି । ବ୍ୟାପକ ଅଭିଜ୍ଞତାର ଫଳ ସ୍ୱରୂପ ଆମେ ଜାଣି ପାରୁଛୁ ଯେ ପର୍ଯ୍ୟାବରଣର ଅଧୋଗତି ଯୋଗୁଁ ହିଁ ମହିଳାମାନଙ୍କ ଶାରୀରିକ ଶ୍ରମ କ୍ରମବର୍ଦ୍ଧମାନ ରୂପ ଧାରଣ କରୁଛି । ଝିଅମାନେ ମା'ମାନଙ୍କର ସହକାରୀ ଭାବରେ ପରିବାରର ଜଂଜାଳଗୁଡ଼ିକୁ କାର୍ଯ୍ୟକାରୀ କରିବାକୁ ବାଧ ହେଉଛନ୍ତି । ଯଦି ଗ୍ରାମାଞ୍ଚଳର ବର୍ଜିତ ଜମିଗୁଡ଼ିକୁ ଉତ୍ପାଦନକ୍ଷମ କରାଯିବା ସଂଭବ ହୁଅନ୍ତା, ଏବଂ ଗ୍ରାମାଞ୍ଚଳର ଜନସାଧାରଣଙ୍କ ପାଇଁ ପାନୀୟ ଜଳ ଓ ଗୋଖାଦ୍ୟ ସୁଲଭ୍ୟ ହୋଇପାରନ୍ତା, ତାହାହେଲେ ମହିଳାମାନଙ୍କ ଦୈନନ୍ଦିନ ଶାରୀରିକ ପରିଶ୍ରମର ଭାର ବହୁ ପରିମାଣରେ ଲାଘବ ହୋଇଯାଆନ୍ତା ।

ଆମ ଦେଶ ଇତ୍ୟବସରରେ କେତେକ ପରିମାଣରେ ଜଙ୍ଗଲ ଦ୍ୱାରା ଆଚ୍ଛାଦିତ ଅଞ୍ଚଳର ସୁରକ୍ଷା କରି ପାରିଛି ବୋଲି କହିଲେ ସତ୍ୟର ଅପଳାପ ହେବ ନାହିଁ । ସରକାରୀ ସୂତ୍ରରୁ ଯୋଗାଇ ଦିଆଯାଉଥିବା ତଥ୍ୟାନୁଯାୟୀ ଜଙ୍ଗଲାଞ୍ଚଳର ଉଚ୍ଛେଦ ପ୍ରକ୍ରିୟାରେ ହ୍ରାସ ଘଟିଛି । ବିଂଶ ଶତାବ୍ଦୀର ଅଷ୍ଟମ ଓ ନବମ ଦଶକରେ ଜଙ୍ଗଲାଚ୍ଛାଦିତ ଜମିର ପରିମାଣକୁ ପ୍ରାୟତଃ ସ୍ଥିର ରଖାଯିବାର ଉଦ୍ୟମ ସଫଳ ହୋଇଛି । ଆମ ଦେଶର ପରିବେଶ-ବିଜ୍ଞାନୀ ଓ ଜଙ୍ଗଲର ପରିଚାଳକମାନେ ଜଙ୍ଗଲାଞ୍ଚଳର ସୁରକ୍ଷା ଦିଗରେ ବିଶେଷ ଆଗ୍ରହୀ ହୋଇଛନ୍ତି; ମାତ୍ର ସେମାନେ

କାହାର ସୁରକ୍ଷା କରିବାକୁ ଚାହୁଁଛନ୍ତି, ସେ ଦିଗରେ ସେମାନେ କୌଣସି ନିଃସନ୍ଦିଗ୍ଧ ମନୋଭାବ ପୋଷଣ କରିନାହାନ୍ତି ।

ପୂର୍ବରୁ ଆମର ଧାରଣା ଥିଲା ଯେ ଗ୍ରାମାଞ୍ଚଳର କ୍ରମବର୍ଦ୍ଧମାନ ବାସିନ୍ଦାଙ୍କ ଜାଳେଣି କାଠ ଚାହିଦା ପୂରଣ ପାଇଁ ଜଙ୍ଗଲାଞ୍ଚଳର ଉଚ୍ଛେଦ ଅନୀବାର୍ଯ୍ୟ ହେଉଛି । ଗ୍ରାମବାସୀମାନଙ୍କ ଚାହିଦା ସଂଖ୍ୟାନୁପାତରେ ବଢୁଛି । ରୋଷେଇ ପାଇଁ ସେମାନେ ଦିନକୁ ଦିନ ଅଧିକରୁ ଅଧିକ ପରିମାଣର ଜାଳେଣି ବ୍ୟବହାର କରୁଛନ୍ତି । ଏଥିପାଇଁ ଉଭୟ ପ୍ରକାଶ୍ୟ ଓ ଅପ୍ରକାଶ୍ୟ ମାର୍ଗରେ ଜଙ୍ଗଲର ଉଚ୍ଛେଦ ଘଟୁଛି । ଆମ ଦେଶର କ୍ରମବର୍ଦ୍ଧମାନ ଜାଳେଣି କାଠ ଚାହିଦା ଓ ଜଂଗଲଗୁଡ଼ିକର ସୁରକ୍ଷା ଭିତ୍ତିକ ସମସ୍ୟାରାଜି ସଂପର୍କରେ ବିଚାର କରିବା ପାଇଁ ନୂଆଦିଲ୍ଲୀସ୍ଥିତ ନାଶନାଲ କାଉନସିଲ ଅଫ୍ ଆପ୍ଲାଏଡ଼ ଇକୋନୋମିକ୍ ରିସର୍ଚ୍ଚ ନାମକ ଗୋଟିଏ ଗବେଷଣାତ୍ମକ ପ୍ରତିଷ୍ଠାନର ପୃଷ୍ଠପୋଷକତାରେ ଗବେଷକମାନେ ବ୍ୟାପକ ସର୍ବେକ୍ଷଣ ଚଳାଇଥିଲେ । ଏହି ସର୍ବେକ୍ଷଣାଶ୍ରୟୀ ରିପୋର୍ଟଟି ପ୍ରକାଶିତ ହେବା ପରେ ଆମ ମନରୁ ଅନେକ ଭ୍ରାନ୍ତି ତଥା ବିଭ୍ରାନ୍ତିକର ଧାରଣାର ମୂଳୋତ୍ପାଟନ ସଂଭବ ହୋଇଛି । ଏଠାରେ ଏହି ରିପୋର୍ଟରେ ସନ୍ନିବେଶିତ କେତେକ ଗୁରୁତ୍ୱପୂର୍ଣ୍ଣ ତଥା ଜ୍ଞାତବ୍ୟ ତଥ୍ୟରାଜିକୁ ଚୁମ୍ବକରେ ସୂଚାଇ ଦେବା ବିଶେଷ ପ୍ରାସଙ୍ଗିକ ବୋଧ ହେଉଛି ।

୧୯୭୮-୭୯ ଆର୍ଥିକ ବର୍ଷରେ ଆମ ଦେଶରେ ମୋଟ ପରିବାରର ଏକ ତୃତୀୟାଂଶ ଜାଳେଣି କାଠ କିଣୁଥିଲେ । ମାତ୍ର ୧୯୯୨-୯୩ ଆର୍ଥିକ ବର୍ଷ ବେଳକୁ ଏହି ପରିବାରଗୁଡ଼ିକର ସଂଖ୍ୟା ପ୍ରାୟ ଏକ-ଷଷ୍ଠାଂଶକୁ କମି ଆସିଲା । ଏପରି ଘଟିବାର କାରଣ ହେଉଛି ଯେ ଏହି ସମୟାନ୍ତରରେ (Farm Forestry) ବା ଜମିରେ ବୃକ୍ଷ ରୋପଣ ପ୍ରତି ବିଶେଷ ପ୍ରାଧାନ୍ୟ ଆରୋପିତ ହୋଇଥିଲା । ଗ୍ରାମାଞ୍ଚଳର ଚାଷୀମାନେ ନିଜ ନିଜ ଜମିରେ ବୃକ୍ଷ ରୋପଣ କରି ଜାଳେଣି କାଠ ଚାହିଦା ପୂରଣ କରିବା ବ୍ୟାପାରରେ ଅଧିକରୁ ଅଧିକ ପରିମାଣରେ ସ୍ୱାବଲମ୍ବୀ ହୋଇ ପାରିଲେ । ୧୯୮୦ ଓ ୧୯୮୮ ମସିହା ମଧ୍ୟରେ ଆମ ଦେଶରେ ପ୍ରାୟ ୧୮୦୦ କୋଟି ବା ୧୮ ବିଲ୍ଲିଅନ ବୃକ୍ଷ ରୋପଣ କରାଯାଇଥିଲା; ତନ୍ମଧ୍ୟରୁ ପ୍ରାୟ ୧୦୦୦ କୋଟି ବା ଦଶ ବିଲ୍ଲିଅନ ବୃକ୍ଷ କେବଳ ଚାଷ ଜମିମାନଙ୍କରେ ଆରୋପିତ ହୋଇଥିଲା । ଯଦି ଏହି ଦଶ ବିଲ୍ଲିୟନ ବୃକ୍ଷ ମଧ୍ୟରୁ କେବଳ ପାଞ୍ଚ ବିଲ୍ଲିୟନ ବୃକ୍ଷ ଠିକଣାଭାବରେ ଉଧେଇ ପାରିଥାଆନ୍ତି, ତାହାହେଲେ ଏଗୁଡ଼ିକରୁ ବର୍ଷ ପିଛା ପ୍ରାୟ ୨୫ ନିୟୁତ ଟନ ଜାଳେଣି କାଠ ମିଳି ପାରିଛି । ନିମ୍ନସୂଚିତ ତୁଳନାତ୍ମକ ଦୃଷ୍ଟିରୁ ବିଚାର କଲେ ଆମେ ଏହାର ଗୁରୁତ୍ୱ ଅନାୟାସରେ ହୃଦୟଙ୍ଗମ

କରି ପାରିବା । ସରକାର ନ୍ୟାୟସଂଗତ ମାର୍ଗରେ ଆମ ଦେଶର ଜଙ୍ଗଲାଞ୍ଚଳରୁ ବର୍ଷ ପିଛା ମାତ୍ର ଦଶ ନିୟୁତ ଟନ ଜାଳେଣି କାଠ ଯୋଗାଇ ପାରନ୍ତି । ଏହି ପରିମାଣ ପରିପ୍ରେକ୍ଷୀରେ ଗ୍ରାମାଞ୍ଚଳର ଚାଷୀମାନଙ୍କ ନିଜ ଉଦ୍ୟମରେ ଉତ୍ପନ୍ନ ଜାଳେଣି କାଠର ପରିମାଣ ଯଥେଷ୍ଟ ଅଧିକ ହୋଇନାହିଁ କି ?

ସବୁଠାରୁ ଆଶ୍ଚର୍ଯ୍ୟଜନକ ତଥା ତାତ୍ପର୍ଯ୍ୟପୂର୍ଣ୍ଣ ଘଟଣା ହେଉଛି ଯେ ପୂର୍ବରୁ ଗ୍ରାମାଞ୍ଚଳର ଲୋକେ ଜାଳେଣି ପାଇଁ ଶୁଖିଲା ପତ୍ର, ଘଷି, ଛୋଟ ଶୁଖିଲା ଡାଳ, ଫସଲ ଅମଳ କରାଯିବା ପରେ ଉଦ୍ଭିଦଗୁଡ଼ିକର ଶୁଷ୍କ ଅବଶେଷ ଆଦି ଜାଳେଣି ଭାବରେ ବ୍ୟବହାର କରୁଥିଲେ । ମାତ୍ର ଏବେ ସେମାନେ ଜାଳେଣି ଭାବରେ ବ୍ୟବହାର କରୁଥିବା ଜୈବବସ୍ତୁଗୁଡ଼ିକର ଗୁଣାତ୍ମକ ମାନରେ ଅଭିବୃଦ୍ଧି ଘଟିଛି । ସେମାନେ ବିଶେଷ ଭାବରେ ଜାଳେଣି ପାଇଁ ଶୁଖିଲା ଚିରା କାଠ ବ୍ୟବହାର କରୁଛନ୍ତି । ଏଥିପାଇଁ ମହିଳାମାନେ ରୋଷେଇ ଘରର ରୁଦ୍ଧ ବାତାବରଣ ମଧ୍ୟରେ ଧୂମ ଓ ବସ୍ତୁକଣାଗୁଡ଼ିକର କୁପ୍ରଭାବ ଯୋଗୁଁ ଅଣନିଃଶ୍ୱାସୀ ହୋଇ ପଡ଼ିବାର ମାତ୍ରାରେ ଯଥେଷ୍ଟ ହ୍ରାସ ଘଟିଛି । ରୋଷେଇ ଘରର୍ ବାୟୁ ପ୍ରଦୂଷଣ ଯୋଗୁଁ ସେମାନଙ୍କର ସ୍ୱାସ୍ଥ୍ୟହାନୀ ଘଟିବାର ମାତ୍ରାରେ ଯଥେଷ୍ଟ ହ୍ରାସ ପରିଲକ୍ଷିତ ହେଉଛି ।

ପୃଥିବୀର ବିଭିନ୍ନ ଅଞ୍ଚଳରେ ମଧ୍ୟ ସର୍ବେକ୍ଷଣ ଚଳାଇବାର ଫଳ ସ୍ୱରୂପ ଜଣା ପଡ଼ିଛି ଯେ ଯେତେବେଳେ ଜାଳେଣି ପାଇଁ କାଠଗଡ଼ ବା ଚିରା କାଠର ଅଭାବ ଘଟିଛି, ସେତେବେଳେ ଲୋକେ ଶୁଖିଲା ପତ୍ର, ଡାଳ, ଘଷି, ଖାଦ୍ୟ ଦ୍ରବ୍ୟ ଅମଳ ହେବା ପରେ ଜମିରେ ରହିଥିବା ବର୍ଜିତ ଜୈବ ବସ୍ତୁଗୁଡ଼ିକୁ ଜାଳେଣି ଭାବରେ ବ୍ୟବହାର କରିବାକୁ ବାଧ୍ୟ ହୋଇଛନ୍ତି । ଉଦାହରଣ ସ୍ୱରୂପ, ପଶ୍ଚିମବଙ୍ଗର ମେଦିନାପୁର ଓ ପୁରୁଲିଆ ଜିଲ୍ଲାମାନଙ୍କରେ ଅଷ୍ଟ ଦଶକର ମଧ୍ୟ ଭାଗରେ ଜାଳେଣି କାଠ ପ୍ରାୟତଃ ଦୁଷ୍ପ୍ରାପ୍ୟ ହୋଇଗଲା । ଏହି ଦୁଃସମୟରେ ସେଠାକାର ବାସିନ୍ଦାମାନେ ଆକାଶିଆ ଗଛର (Acacia Auriculiformis) ଶୁଖିଲା ପତ୍ରକୁ ହିଁ ମୁଖ୍ୟ ଜାଳେଣି ଭାବରେ ବ୍ୟବହାର କରିଥିଲେ ।

ପୂର୍ବସୂଚିତ ଗବେଷଣାଶ୍ରୟୀ ରିପୋର୍ଟରୁ ଜଣା ପଡୁଛି ଯେ ୧୯୭୮-୭୯ ମସିହା ତୁଳନାରେ ୧୯୯୨-୯୩ ମସିହା ବେଳକୁ ଘଷି ଓ ଫସଲର ଅବଶେଷଗୁଡ଼ିକୁ ଜାଳେଣି ଭାବରେ ବ୍ୟବହାର କରାଯିବାର ଶତକଡ଼ା ଅନୁପାତରେ ମଧ୍ୟ ୩୫.୬୨ ଭାଗଠାରୁ ୨୯.୧୧ ଭାଗ ପର୍ଯ୍ୟନ୍ତ ହ୍ରାସ ଘଟିଲା । ଏଥିରୁ ଅନାୟାସରେ ଉପଲବ୍ଧ ହେଉଛି ଯେ ଏହି ଶତାବ୍ଦୀର ସପ୍ତମ ଓ ଅଷ୍ଟମ ଦଶକରେ ଜାଳେଣି କାଠର ଅଭାବ ରୂପୀ ସମସ୍ୟାଟିକୁ 'ଗ୍ରାମାଞ୍ଚଳର ଶକ୍ତି ସଂକଟ' (rural energy crisis) ଭାବରେ ବିଚାର କରାଯାଉଥିବା ବେଳେ ନବମ

ଦଶକ ବେଳକୁ ଏହାର ତୀବ୍ରତା ବିଶେଷ ପରିମାଣରେ ଲାଘବ ହୋଇଗଲା । ଗ୍ରାମାଞ୍ଚଳର ବାସିନ୍ଦାମାନଙ୍କ ପାଇଁ ଉଭୟ ଗୁଣାତ୍ମକ ଓ ବ୍ୟୟସାପେକ୍ଷତା ଦୃଷ୍ଟିରୁ ଉଚ୍ଚ କୋଟୀର ଜାଳେଣି କାଠ ସୁଲଭ୍ୟ ହୋଇ ପାରିଲା । ଏପରି ଶୁଭକାରୀ ପରିବର୍ତ୍ତନ ଘଟାଇବା ଦିଗରେ Prosopis Juliflora ଜାତୀୟ ବୃକ୍ଷଗୁଡ଼ିକ ହିଁ ବିଶେଷଭାବରେ ସହାୟକ ହେଲେ । ଏଗୁଡ଼ିକୁ ରାଷ୍ଟ୍ରାୟତ୍ତ ଜମିମାନଙ୍କରେ, ରାସ୍ତା କଡ଼ରେ ଏବଂ ଶୁଷ୍କ ତଥା ପୂର୍ବରୁ ବର୍ଜିତ ଜମିମାନଙ୍କରେ ବହୁ ସଂଖ୍ୟାରେ ରୋପଣ କରାଗଲା । ଏବେ ଆମେ ଏହି ବୃକ୍ଷଗୁଡ଼ିକୁ ଉତ୍ତର ପ୍ରଦେଶ, ପଞ୍ଜାବ ଓ ହରିଆଣାର ପ୍ରାୟ ସବୁ ଜିଲ୍ଲାରେ, ଗୁଜରାଟର କତିପୟ ଜିଲ୍ଲାମାନଙ୍କରେ; କର୍ଣ୍ଣାଟକର ବାଙ୍ଗାଲୋର, ତୁମକୁର ଓ କୋଲାର ଜିଲ୍ଲାମାନଙ୍କରେ; ଏବଂ ପଶ୍ଚିମବଙ୍ଗର ମେଦିନିପୁର, ବାଙ୍କୁଡ଼ା ଓ ପୁରୁଲିଆ ଜିଲ୍ଲାରେ ବହୁ ସଂଖ୍ୟାରେ ଦେଖିପାରୁଛୁ ।

ଜାଳେଣି କାଠର ଅଭାବ ଭଳି ଗୋଟିଏ ଜାତୀୟ ସମସ୍ୟାର ସମାଧାନ ପାଇଁ ଗ୍ରାମାଞ୍ଚଳର ବାସିନ୍ଦାମାନେ ବୈୟକ୍ତିକ ଭାବରେ ତଥା ସାଂଗଠନିକ ମାର୍ଗରେ ଠିକଣା କର୍ମପନ୍ଥାର ଅନୁଗାମୀ ହେବା ଯୋଗୁଁ ୧୯୭୮-୭୯ ଓ ୧୯୯୨-୯୩ ସମୟାନ୍ତର ମଧ୍ୟରେ ସ୍ଥିତାବସ୍ଥାରେ କ୍ରମୋନ୍ନତି ପରିଲକ୍ଷିତ ହେଲା । ସରକାର Farm Forestry ର ଉପାଦେୟତା ସଂପର୍କରେ ଜନସାଧାରଣଙ୍କୁ ସଚେତନ କରାଇବାରୁ ଏବଂ ଏ ଦିଗରେ ଉପଯୁକ୍ତ ଦିଗ୍‌ଦର୍ଶନ ପ୍ରଦାନ କରିବାରୁ ଏପରି ଶୁଭକାରୀ ପରିବର୍ତ୍ତନ ଘଟିବା ସଂଭବ ହେଲା । ମାତ୍ର ସରକାରୀ କର୍ତ୍ତୃପକ୍ଷ ଏହି ପ୍ରକ୍ରିୟାକୁ ସମୟକ୍ରମେ ବଳବତ୍ତର ରଖାଇବାକୁ ସମର୍ଥ ହେଲେ ନାହିଁ । Farm Forestryର ପ୍ରସାର ପାଇଁ ଯେଉଁ ସରକାରୀ ଉଦ୍ୟମ ଚାଲିଥିଲା, ତାହାକୁ ବନ୍ଦ କରିଦିଆଗଲା । ସରକାର ଉ ୍ୟୁକ୍ତ ଜମିମାନଙ୍କରେ ଜାଳେଣି କାଠ ପାଇଁ ଠିକଣା ବୃକ୍ଷଗୁଡ଼ିକୁ ରୋପଣ କରିବା ବ୍ୟାପାରରେ ଗ୍ରାମାଞ୍ଚଳର ବାସିନ୍ଦାମାନଙ୍କୁ ଉତ୍ସାହିତ କରିବା ଦିଗରେ ଅପାରଗ ହେଲେ । ଏବେ ମଧ୍ୟ ଆମେ ଠିକ୍ ଭାବରେ ଜାଣି ପାରିନାହୁଁ ଯେ ସାରା ଦେଶର ଜାଳେଣି କାଠ ସମସ୍ୟାର ସମାଧାନ ପାଇଁ ଜନସାଧାରଣ ଉଲ୍ଲିଖିତ ମାର୍ଗରେ ଠିକଣା ପନ୍ଥାର ଅନୁଗାମୀ ହୋଇଛନ୍ତି କି ନା କିମ୍ବା ଏହି ବ୍ୟାପାରରେ କେବଳ ଦେଶର କେତେକ ଜିଲ୍ଲାମାନଙ୍କରେ ହିଁ ଉଚିତ ବ୍ୟବସ୍ଥାଗୁଡ଼ିକୁ କାର୍ଯ୍ୟକାରୀ କରାଯାଇଛି ।

ଗୋଟିଏ ଦେଶର ଭୌତିକ ପରିବେଶର ଗୁଣାତ୍ମକ ମାନ ନିର୍ଦ୍ଧାରଣ ବ୍ୟାପାରରେ ସେହି ଦେଶର ଜଂଗଲାଞ୍ଚଳର ବିସ୍ତୃତି ଅନ୍ୟତମ ମୁଖ୍ୟ ଭୂମିକା ଗ୍ରହଣ କରେ । ଗୋଟିଏ ଦେଶର ମୋଟ ସ୍ଥଳଭାଗର ଅନ୍ତତଃ ପ୍ରାୟ ଏକ-ତୃତୀୟାଂଶ

ଜଙ୍ଗଲ ଦ୍ୱାରା ଆଚ୍ଛାଦିତ ହୋଇ ପାରିଲେ ସେହି ଅଂଚଳରେ ପରିବେଶୀୟ ପ୍ରଦୂଷଣର ତୀବ୍ରତା ଆତଙ୍କପ୍ରଦ ହେବାର ଅବକାଶ ରହେ ନାହିଁ । ଭାରତ ସରକାରଙ୍କ ପରିବେଶ ଓ ଜଙ୍ଗଲ ମନ୍ତ୍ରଣାଳୟଙ୍କ (Ministry of Environment and Forest : MEF) ସୂଚନା ଅନୁଯାୟୀ ୧୯୯୧-୯୩ ଓ ୧୯୯୩-୯୫ ସମୟାନ୍ତର ମଧ୍ୟରେ ଆମ ଦେଶରେ ଜଙ୍ଗଲାଞ୍ଚଳର ବିସ୍ତୃତି ପ୍ରାୟତଃ ଅପରିବର୍ତ୍ତିତ ରହିଛି । ଏହାର ବିସ୍ତୃତି ୬୩.୯୬ ନିୟୁତ ହେକ୍ଟର୍‌ରୁ ସାମାନ୍ୟ କମିଯାଇଛି । ଏବେ ଆମ ଦେଶର ଜଙ୍ଗଲାଞ୍ଚଳର ବିସ୍ତୃତି ପ୍ରାୟ ୬୩.୩୪ ନିୟୁତ ହେକ୍ଟର (mha) ହୋଇଛି । ମାତ୍ର ଏହି ସରକାରୀ ସୂଚନାରୁ ପରିବେଶ-ବିଜ୍ଞାନୀମାନେ ଆମ ଦେଶର ଜଙ୍ଗଲାଞ୍ଚଳଗୁଡ଼ିକର ପ୍ରକାରଭେଦ ଓ ସେଗୁଡ଼ିକର ସୁରକ୍ଷା ସମ୍ବନ୍ଧୀୟ ଜ୍ଞାତବ୍ୟ ତଥ୍ୟରାଜି ପାଇ ପାରୁନାହାନ୍ତି । ଆମ ଦେଶରେ କେଉଁ କେଉଁ ଅଞ୍ଚଳରେ ପ୍ରାକୃତିକ ଜଙ୍ଗଲଗୁଡ଼ିକ (natural forest) ବିଶେଷ ଅଧୋଗତିର ସମ୍ମୁଖୀନ ହୋଇଛନ୍ତି, ତତ୍‌ସଂପର୍କୀୟ ସଠିକ୍ ସୂଚନା ଏଥିରୁ ମିଳୁନାହିଁ ।

ମିଳିତ ଜାତିସଂଘର ଫୁଡ୍ ଆଣ୍ଡ ଏଗ୍ରିକଲଚରାଲ ଅର୍ଗାନାଇଜେସନର (FAO) ବିଶେଷଜ୍ଞମାନେ ଆମ ଦେଶରେ ଜଙ୍ଗଲଗୁଡ଼ିକର ବିସ୍ତୃତି ଓ ସେଗୁଡ଼ିକର ପ୍ରକାରଭେଦ ସଂପର୍କରେ ଭିନ୍ନ ପ୍ରକାର ପରିସଂଖ୍ୟାନାଶ୍ରୟୀ ତଥ୍ୟଗୁଡ଼ିକୁ ପରିବେକ୍ଷଣ କରିଛନ୍ତି । ଏହି ସଂଗଠନର ବିଶେଷଜ୍ଞମାନଙ୍କ ମତାନୁଯାୟୀ ୧୯୯୦ ମସିହାରେ ଆମ ଦେଶରେ ମୋଟ ଜଙ୍ଗଲାଞ୍ଚଳର ବିସ୍ତୃତି ୭୦.୬୩ ନିୟୁତ ହେକ୍ଟର (mha) ହୋଇଛି; ତନ୍ମଧ୍ୟରୁ ୫୧.୭୩ ନିୟୁତ ହେକ୍ଟର ପରିମିତ ଜଙ୍ଗଲକୁ ପ୍ରାକୃତିକ ଜଙ୍ଗଲ ଭାବରେ ଚିହ୍ନୋଟ କରାଯାଇଛି ଏବଂ ଅବଶିଷ୍ଟ ୧୮.୯୦ ନିୟୁତ ହେକ୍ଟର ପରିମିତ ଜଙ୍ଗଲକୁ ବୃକ୍ଷ ରୋପଣ ପ୍ରକ୍ରିୟା (under plantations) ଅବଲମ୍ବନରେ ସୃଷ୍ଟି କରାଯାଇଛି । ୧୯୮୦ ମସିହାରେ (FAO) ଆନୁକୂଲ୍ୟରେ ସଂଘଟିତ ଏକ ସର୍ବେକ୍ଷଣରୁ ଜଣା ପଡ଼ିଥିଲା ଯେ ଆମ ଦେଶରେ ମୋଟ ଜଙ୍ଗଲାଞ୍ଚଳର ବିସ୍ତୃତି ୬୦.୪୧ ନିୟୁତ ହେକ୍ଟର ହୋଇଛି; ତନ୍ମଧ୍ୟରୁ ପ୍ରାକୃତିକ ଜଙ୍ଗଲର ବିସ୍ତୃତି ହେଉଛି ୫୭.୨୩ ନିୟୁତ ହେକ୍ଟର ଏବଂ ବୃକ୍ଷ ରୋପଣ ଅବଲମ୍ବନରେ ସୃଷ୍ଟ ଜଙ୍ଗଲର ବିସ୍ତୃତି ହେଉଛି ୩.୧୮ ନିୟୁତ ହେକ୍ଟର ।

FAO ଆନୁକୂଲ୍ୟରେ ପରିଚାଳିତ ସର୍ବେକ୍ଷଣ ଅନୁଯାୟୀ ଅଷ୍ଟ ଦଶକରେ ପ୍ରତି ବର୍ଷ ଆମ ଦେଶର ଜଙ୍ଗଲାଞ୍ଚଳର ପରିସର ଏକ ନିୟୁତ ହେକ୍ଟର ଆବର୍ଦ୍ଧିତ ହୋଇଛି । ଏହି ଦଶକରେ ମୋଟ ୧୦ ନିୟୁତ ହେକ୍ଟର ନୂଆ ଜଙ୍ଗଲ ସୃଷ୍ଟି କରାଯିବା ସଂଭବ ହୋଇଛି । ଇତ୍ୟବସରରେ ପ୍ରାକୃତିକ ଜଙ୍ଗଲର ବିସ୍ତୃତିରେ ପ୍ରାୟ ୩.୩୯ ନିୟୁତ ହେକ୍ଟର ହ୍ରାସ ଘଟିଛି; ମାତ୍ର ସମକାଳୀନ ଭାବରେ ବୃକ୍ଷ ରୋପଣ

ପ୍ରକ୍ରିୟା ଅବଲମ୍ବନରେ ସୃଷ୍ଟ ଜଙ୍ଗଲାଞ୍ଚଳର ବିସ୍ତୃତି ୧୫.୭୩ ନିୟୁତ ହେକ୍ଟର ଆବର୍ଦ୍ଧିତ ହୋଇଛି । FAO ସଂଗଠନର ବିଶେଷଜ୍ଞମାନେ ତଥ୍ୟରାଜି ସଂଗ୍ରହ କରିବା ପାଇଁ କୃତ୍ରିମ ଉପଗ୍ରହର ସଦ୍‌ବ୍ୟବହାର କରିଛନ୍ତି । ସୁଦୂରଦର୍ଶନ (remote sensing) ବ୍ୟବସ୍ଥାର ସଦୁପଯୋଗ କରି ସେମାନେ ବୃକ୍ଷ ଦ୍ୱାରା ଆଚ୍ଛାଦିତ ଅଞ୍ଚଳଗୁଡ଼ିକୁ ଚିହ୍ନୋଟ କରିଛନ୍ତି; ଶସ୍ୟକ୍ଷେତ୍ରରେ ତଥା ବର୍ଜିତ ଜମିଗୁଡ଼ିକରେ ରୋପିତ ବୃକ୍ଷଗୁଡ଼ିକୁ ଏହି ହିସାବର ଅନ୍ତର୍ଭୁକ୍ତ କରାଯାଇଛି । ଏହି ସର୍ବେକ୍ଷଣର ବିଶେଷତ୍ୱ ହେଉଛି ଯେ ଏହାଦ୍ୱାରା ପ୍ରାକୃତିକ ଜଙ୍ଗଲ ଏବଂ ବୃକ୍ଷ ରୋପଣ ପ୍ରକ୍ରିୟା ଅବଲମ୍ବନରେ ସୃଷ୍ଟ ଜଙ୍ଗଲଗୁଡ଼ିକୁ ପୃଥକ ଭାବରେ ଚିହ୍ନୋଟ କରିବା ତଥା ସେଗୁଡ଼ିକର ସ୍ଥିତାବସ୍ଥା ସଂପର୍କରେ ଜ୍ଞାତବ୍ୟ ତଥ୍ୟରାଜି ଯୋଗାଇ ଦେବା ସଂଭବ ହୋଇଛି ।

FAO ଆନୁକୂଲ୍ୟରେ ସଂଘଟିତ ସର୍ବେକ୍ଷଣ ଫଳରେ ଆମେ ଦୁଇଟି ତାତ୍ପର୍ଯ୍ୟପୂର୍ଣ୍ଣ ଘଟଣା ସଂପର୍କରେ ଜ୍ଞାନ ଅର୍ଜନ କରି ପାରିଛୁ :

ପ୍ରଥମତଃ, ଏହି ଶତାବ୍ଦୀର ସପ୍ତ ଦଶକ ଓ ଅଷ୍ଟ ଦଶକ ମଧ୍ୟରେ ପ୍ରାକୃତିକ ଜଙ୍ଗଲଗୁଡ଼ିକର ଉଚ୍ଛେଦ ପ୍ରକ୍ରିୟାରେ କୌଣସି ପରିବର୍ତ୍ତନ ଘଟି ନାହିଁ । ଅଷ୍ଟ ଦଶକରେ ପରିବେଶ ଓ ଜଙ୍ଗଲ ମନ୍ତ୍ରଣାଳୟର ସର୍ଜନା ତଥା ପରିବେଶ ବିଜ୍ଞାନୀମାନଙ୍କ ଶତ ଚେଷ୍ଟା ସତ୍ତ୍ୱେ ପ୍ରାକୃତିକ ଜଙ୍ଗଲଗୁଡ଼ିକର ସୁରକ୍ଷା ଦିଗରେ କୌଣସି ଫଳପ୍ରଦ ପଦକ୍ଷେପ ଗ୍ରହଣ କରାଯିବା ସମ୍ଭବ ହୋଇନାହିଁ ।

ଦ୍ୱିତୀୟତଃ, ଆମ ଦେଶରେ ଜଙ୍ଗଲାଞ୍ଚଳର ପରିଚାଳକମାନେ ପ୍ରାକୃତିକ ଜଙ୍ଗଲର ସୁରକ୍ଷା ଦିଗରେ ବିଶେଷ ଯତ୍ନବାନ୍ ହେବା ପରିବର୍ତ୍ତେ ବୃକ୍ଷ ରୋପଣ ପ୍ରକ୍ରିୟା ଅବଲମ୍ବନରେ ନୂଆ ନୂଆ ଜଙ୍ଗଲ ସୃଷ୍ଟି କରିବା ଦିଗରେ ପ୍ରାଧାନ୍ୟ ଆରୋପ କରିଛନ୍ତି ।

ପୃଥିବୀର ଯେଉଁ ୨୮ଟି ଦେଶରେ ପ୍ରାକୃତିକ ଜଙ୍ଗଲ ଦାରୁଣ ଅଧୋଗତିର ସମ୍ମୁଖୀନ ହୋଇଛି, ତନ୍ମଧ୍ୟରେ ଆମ ଦେଶ ଅନ୍ତର୍ଭୁକ୍ତ ହୋଇଛି । ପ୍ରାକୃତିକ ଜଙ୍ଗଲଗୁଡ଼ିକର ସୁରକ୍ଷା ପାଇଁ ଆଉ ବେଶି ସମୟ ଆମ ହାତରେ ନାହିଁ ("not much time" to protect the natural forests) । ୱାର୍ଲଡ୍ ରିସୋର୍ସ ଇନ୍‌ଷ୍ଟିଚ୍ୟୁଟ୍ ଆନୁକୂଲ୍ୟରେ 'The Last Frontier Forests : Ecosystems and Economies on The Edge' ଶିରୋନାମାରେ ପରିଚାଳିତ ସର୍ବେକ୍ଷଣରୁ ଉଲ୍ଲିଖିତ ତଥ୍ୟଗୁଡ଼ିକୁ ସଂଗ୍ରହ କରାଯାଇଛି । ଶେଷୋକ୍ତ ସର୍ବେକ୍ଷଣ ଅନୁଯାୟୀ ଆମ ଦେଶର ମୌଳିକ ତଥ୍ୟଗୁଡ଼ିକୁ ସଂଗ୍ରହ କରାଯାଇଛି । ଶେଷୋକ୍ତ ସର୍ବେକ୍ଷଣ ଅନୁଯାୟୀ ଆମ

ଦେଶର ମୌଳିକ ପ୍ରଣ୍ଟିୟର ଜଙ୍ଗଲର (original frontier forest) ପ୍ରାୟ ଶତକଡ଼ା ୯୯ ଭାଗ ନଷ୍ଟ ହୋଇଛି । ଆମ ଦେଶରେ ଅବଶିଷ୍ଟ ଯେଉଁ ପ୍ରାକୃତିକ ଜଙ୍ଗଲ ରହିଛି, ତାହାର ପ୍ରାୟ ଶତକଡ଼ା ୫୭ ଭାଗ ଏବେ ଅଧୋଗତିର ସମ୍ମୁଖୀନ ହୋଇଛି । ଏହି ସର୍ବେକ୍ଷଣରୁ ଜଣାପଡୁଛି ଯେ ମିଆମାର (ବର୍ମା), ଅଷ୍ଟ୍ରେଲିଆ ଓ ପାପୁଆ ନିଉଗିନି ଆଦି ଦେଶଗୁଡ଼ିକ ତୁଳନାରେ ଆମ ଦେଶରେ ପ୍ରାକୃତିକ ଜଙ୍ଗଲ (Frontier forest) ଦାରୁଣ ଦୁରବସ୍ଥାର ସମ୍ମୁଖୀନ ହୋଇଛି ।

ଆମ ଦେଶର କେନ୍ଦ୍ର ସରକାରଙ୍କ ପରିବେଶ ଓ ଜଙ୍ଗଲ ମନ୍ତ୍ରଣାଳୟ ଯେଉଁ ନୂତନ ଜଙ୍ଗଲ ସମ୍ପର୍କୀୟ ନୀତିଗୁଡ଼ିକୁ କାର୍ଯ୍ୟକାରୀ କରାଇବାର ନିଷ୍ପତ୍ତି ଗ୍ରହଣ କରିଥିଲେ ଏବଂ ସ୍ଥାନୀୟ ଜନସାଧାରଣଙ୍କ ସହଯୋଗ ବଳରେ (Joint Forest Management: JFM) ଜଙ୍ଗଲର ସୁରକ୍ଷା ଦିଗରେ ଯେପରି ଭାବରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାକୁ ସ୍ଥିର କରିଥିଲେ, ୧୯୯୩ ମସିହା ପରେ ସେଗୁଡ଼ିକୁ ଠିକଣା ଭାବରେ କାର୍ଯ୍ୟକାରୀ କରାଯିବା ଦିଗରେ ରାଜନୈତିକ ମନୋବଳର ଅଭାବ ପରିଲକ୍ଷିତ ହେଉଛି । କେବଳ ଜନସାଧାରଣଙ୍କୁ କୌଣସି ପ୍ରକାରେ ସନ୍ତୁଷ୍ଟ କରିବା ପାଇଁ ତଥା ବୈଦେଶିକ ମୁଦ୍ରା ପାଇବା ପାଇଁ ଏପରି ନୀତି ଓ କାର୍ଯ୍ୟକ୍ରମଗୁଡ଼ିକୁ ବିଜ୍ଞାପିତ କରାଯାଉଛି । ପରିବେଶ ଓ ଜଙ୍ଗଲ ମନ୍ତ୍ରଣାଳୟ ଇତ୍ୟବସରରେ ଜଙ୍ଗଲ-ନୀତିରେ ପରିବର୍ତ୍ତନ ଘଟାଇବା ପାଇଁ ଗୋଟିଏ ପ୍ରସ୍ତାବ ଉପସ୍ଥାପନା କରିଥିଲେ । ଲିଜ୍ ଆକାରରେ ଶିଳ୍ପାନୁଷ୍ଠାନଗୁଡ଼ିକୁ ଜଙ୍ଗଲାଞ୍ଚଳର ରକ୍ଷଣାବେକ୍ଷଣ ଦାୟିତ୍ୱ ଅର୍ପଣ କରିବା ହିଁ ଥିଲା ଏହାର ଲକ୍ଷ୍ୟ । ମାତ୍ର ତୃଣମୂଳ ସଙ୍ଗଠନଗୁଡ଼ିକ ଏପରି ପ୍ରସ୍ତାବର ତୁମୁଳ ବିରୋଧ କରିବାର ସମ୍ଭାବନା ଉପୁଜିବାରୁ କ୍ୟାବିନେଟ୍ ଏହାକୁ ଅନୁମୋଦନ କଲେ ନାହିଁ । ଏହା ପରେ ପରିବେଶ ଓ ଜଙ୍ଗଲ ମନ୍ତ୍ରଣାଳୟ ଜଙ୍ଗଲ ଉପରୁ ଜନସାଧାରଣଙ୍କ କର୍ତ୍ତୃତ୍ୱରେ ହ୍ରାସ ଘଟାଇ ପାରିବା ଭଳି ଆଉ ଏକ ନୂଆ ବିଲ୍ ପ୍ରସ୍ତୁତ କଲେ । ଏହି ବିଲ୍ ଜରିଆରେ ସୂଚାଇ ଦିଆଗଲା ଯେ ରିଜର୍ଭ ଫରେଷ୍ଟ ବା ସଂରକ୍ଷିତ ଜଙ୍ଗଲର କୌଣସି ଅଂଶବିଶେଷକୁ ଗ୍ରାମାଞ୍ଚଳ ପାଇଁ ବ୍ୟବହାରଯୋଗ୍ୟ ଜଙ୍ଗଲ ଭାବରେ ବିଚାର କରାଯିବ ନାହିଁ । 'ରିଜର୍ଭଡ୍' ବା ସଂରକ୍ଷିତ ଜଙ୍ଗଲଗୁଡ଼ିକର ରକ୍ଷଣାବେକ୍ଷଣ ବ୍ୟାପାରରେ ସ୍ଥାନୀୟ ଜନସାଧାରଣଙ୍କ ସହଯୋଗ ଲୋଡ଼ାଯିବ ନାହିଁ । ଆମେ ଜାଣୁ ଯେ ଆମ ଦେଶର ମୋଟ ଜଙ୍ଗଲାଞ୍ଚଳର ପ୍ରାୟ ଦୁଇ-ତୃତୀୟାଂଶକୁ (ମୋଟ ୬୭ ନିୟୁତ ହେକ୍ଟର ମଧ୍ୟରୁ ପ୍ରାୟ ୪୬ ନିୟୁତ ହେକ୍ଟର ସଂରକ୍ଷିତ ଜଙ୍ଗଲର ଶ୍ରେଣୀଭୁକ୍ତ କରାଯାଇଛି । ଏଣୁ ଏହି ନୂତନ ବିଲ୍ ଅନୁଯାୟୀ ଏହି ସୁବିସ୍ତୃତ ଜଙ୍ଗଲାଞ୍ଚଳର ପରିଚାଳନା ବ୍ୟାପାରରେ ସ୍ଥାନୀୟ ଜନସାଧାରଣଙ୍କର କୌଣସି କର୍ତ୍ତୃତ୍ୱ ରହିବ ନାହିଁ । ସରକାରଙ୍କର

ଜନସ୍ୱାର୍ଥବିରୋଧୀ ତଥା ଅପରିଣାମଦର୍ଶୀ କାର୍ଯ୍ୟାନୁଷ୍ଠାନକୁ ଉପଲକ୍ଷ୍ୟ କରି ଯୋଜନା କିମଶନର ସେକ୍ରେଟାରୀ ଏନ୍. ସି. ସାକ୍ସେନା ପ୍ରସଙ୍ଗକ୍ରମେ ଲେଖିଛନ୍ତି :

"After 1993, commitment by the Union Government to the new forest policy and joint forest management has considerably weakened....... These are used merely to create a favourable public image and attract foreign funds. The MEF moved a proposal to amend the forest policy to permit leasing of forest lands to industry, but it was not approved by the Cabinet for fear of reprisals by grassroots organisations. It prepares a new forest bill designed to reduce people's control over forests. The most draconian provision of the bill is that village forests can not be constituted from reserve forsest, whereas JFM can not be applied on the reserved category. Thus, about two-thirds of the forest area (46 mha out of 67 mha is declared as reserve forests) would not be available for management by the people."

ଆମ ଦେଶର ଗ୍ରାମାଞ୍ଚଳରେ ଜଳାଭାବ, ଜାଳେଣି କାଠ ସମସ୍ୟା, ଜଙ୍ଗଲାଞ୍ଚଳର ସୁରକ୍ଷା ଓ ଜଙ୍ଗଲଜାତ ଦ୍ରବ୍ୟଗୁଡ଼ିକର ଜନହିତକାରୀ ଉପଯୋଗ ଆଧାରିତ ସ୍ଥିତାବସ୍ଥା ସମ୍ପର୍କରେ ଉଲ୍ଲିଖିତ ଆଲୋଚନାରେ ସଂକ୍ଷିପ୍ତ ସୂଚନା ପ୍ରଦତ୍ତ ହେଲା । ଏଥିରୁ ସ୍ପଷ୍ଟ ଜଣାପଡୁଛି ଯେ ବିଜ୍ଞାନସମ୍ମତ ପନ୍ଥା ଅବଲମ୍ବନରେ ସରକାରୀ କର୍ତ୍ତୃପକ୍ଷ ଏବଂ ବିଶେଷଭାବରେ ବେସରକାରୀ ସେବାକାରୀ ଅନୁଷ୍ଠାନଗୁଡ଼ିକ ଯେଉଁ ଅଞ୍ଚଳମାନଙ୍କରେ ସ୍ଥାନୀୟ ଜନସାଧାରଣଙ୍କ କାର୍ଯ୍ୟଦକ୍ଷତାର ସଦୁପଯୋଗ ବଳରେ ଉପଯୁକ୍ତ ଅବସ୍ଥାପନା ସୃଷ୍ଟି କରୁଛନ୍ତି, ସେହି ଅଞ୍ଚଳମାନଙ୍କରେ ପର୍ଯ୍ୟାବରଣୀୟ ଦୁର୍ଗତିର ଅପସାରଣ ଘଟିବା ସଙ୍ଗେ ସଙ୍ଗେ ଦାରିଦ୍ର୍ୟର ତୀବ୍ରତାରେ ମଧ୍ୟ ଲକ୍ଷ୍ୟଣୀୟ ହ୍ରାସ ଘଟୁଛି । ଲକ୍ଷ୍ୟ କରାଯାଉଛି ଯେ ଏବଂବିଧ ସରକାରୀ ତଥା ସମୟୋଚିତ ପଦକ୍ଷେପଗୁଡ଼ିକର କାର୍ଯ୍ୟକାରିତା ପାଇଁ ଜନଚେତନାର ଜାଗରଣ ଘଟୁଛି ଏବଂ ସରକାର ଅମଲାତନ୍ତ୍ରର କର୍ମାଭିମୁଖ୍ୟରେ ଆନୁଷଙ୍ଗିକ ପରିବର୍ତ୍ତନ ଘଟାଇବା ଦିଗରେ ପ୍ରାରମ୍ଭିକ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରୁଛନ୍ତି । ଏଣୁ ଆମେ ଆଶା କରିବା ଯେ ଏକବିଂଶ ଶତାବ୍ଦୀରେ ଆମ ଦେଶର ପର୍ଯ୍ୟାବରଣୀୟ ଦୁର୍ଗତିକୁ ରୋକିବା ପାଇଁ ତଥା ଗ୍ରାମାଞ୍ଚଳରୁ ଦାରିଦ୍ର୍ୟର ଅପସାରଣ ଘଟାଇବା ପାଇଁ ସରକାର ଜନମତର ଚାପରେ ଠକଣା ନୀତିଗୁଡ଼ିକୁ କାର୍ଯ୍ୟକାରୀ କରାଇବାକୁ ସମର୍ଥ ହେବେ ଏବଂ ସାରା ଦେଶରେ ବିଭିନ୍ନ ସେବାକାରୀ ଅନୁଷ୍ଠାନଗୁଡ଼ିକର ତତ୍ତ୍ୱାବଧାନରେ ବହୁବିଧ ଯୋଜନାଗୁଡ଼ିକୁ ସ୍ଥାନୀୟ

ଜନସାଧାରଣଙ୍କ ପ୍ରତ୍ୟକ୍ଷ ସହଯୋଗ ବଳରେ କାର୍ଯ୍ୟକାରୀ କରାଇବା ସମ୍ଭବ ହେବ ।

ଆମ ଦେଶର ଗ୍ରାମାଞ୍ଚଳର ପର୍ଯ୍ୟାବରଣୀୟ ଦୁର୍ଗତି ସମ୍ପର୍କୀୟ ଏହି ସଂକ୍ଷିପ୍ତ ଆଲୋଚନାର ପରିସମାପ୍ତି ଘଟାଇବା ପୂର୍ବରୁ ଏଠାରେ ଗ୍ରାମାଞ୍ଚଳର ଆଉ ଏକ ଗୁରୁତ୍ୱପୂର୍ଣ୍ଣ ତଥା ପାରମ୍ପରିକ ବିଘଟଣ ସମ୍ପର୍କରେ ସୂଚାଇଦେବା ପ୍ରାସଙ୍ଗିକ ବୋଧ ହେଉଛି । ତାହା ହେଉଛି : ଆଭ୍ୟନ୍ତରୀଣ ବାୟୁ ପ୍ରଦୂଷଣ । ବାୟୁ ପ୍ରଦୂଷଣ ରୂପୀ ସମସ୍ୟା ସମ୍ପର୍କରେ ବିଚାର କରିବା ବେଳେ ଆମେ କେବଳ ନଗରାଞ୍ଚଳ ପ୍ରତି ଦୃଷ୍ଟିପାତ କରୁଛୁ । ନଗରାଞ୍ଚଳରେ ଓ ଶିଳ୍ପାଞ୍ଚଳରେ ଶିଳ୍ପାନୁଷ୍ଠାନଗୁଡ଼ିକରୁ ନିଃସୃତ ବିଷାକ୍ତ ଗ୍ୟାସ ଓ ବସ୍ତୁକଣିକାଗୁଡ଼ିକ ଯୋଗୁଁ ତଥା ଇଞ୍ଜିନଚାଳିତ ଯାନଗୁଡ଼ିକରୁ ନିଃସୃତ ବିଷାକ୍ତ ଗ୍ୟାସ୍‌ଗୁଡ଼ିକ ଯୋଗୁଁ ବାୟୁ ପ୍ରଦୂଷିତ ହେଉଛି । ଆମ ଦେଶର ରାଜଧାନୀ ନୂଆଦିଲ୍ଲୀ ସମେତ କେତେକ ବୃହତ୍ ନଗରୀରେ ବାୟୁ ପ୍ରଦୂଷଣର ତୀବ୍ରତା ଆତଙ୍କପ୍ରଦ ରୂପ ଧାରଣ କରୁଥିବାରୁ ଏହାର ନିରାକରଣ ଦିଗରେ ସମୟୋଚିତ ପଦକ୍ଷେପଗୁଡ଼ିକୁ କାର୍ଯ୍ୟକାରୀ କରାଯିବା ଦିଗରେ ଅବଶ୍ୟ ଅଗ୍ରାଧିକାର ଆରୋପିତ ହେଉଛି; ଅମଲାତନ୍ତ୍ର ଓ ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀଙ୍କ ନିଷ୍କ୍ରିୟତା ଓ ସ୍ୱାର୍ଥାନ୍ୱେଷୀ ଆଚରଣ ବିରୋଧରେ ଉଚ୍ଚତମ ନ୍ୟାୟାଳୟର ନ୍ୟାୟାଧୀଶମାନେ ମଧ୍ୟ ନିଷେଧାଜ୍ଞା ପ୍ରବର୍ତ୍ତନ କଲେଣି । ମାତ୍ର ଆଭ୍ୟନ୍ତରୀଣ ବାୟୁ ପ୍ରଦୂଷଣ ଯୋଗୁଁ ଗ୍ରାମାଞ୍ଚଳର ଗୃହିଣୀମାନଙ୍କର ଘଟୁଥିବା ଗୁରୁତର ସ୍ୱାସ୍ଥ୍ୟହାନୀ ମଧ୍ୟ ଏବେ ପରିବେଶବିଜ୍ଞାନୀମାନଙ୍କ ଦୃଷ୍ଟି ଆକର୍ଷଣ କରିଛି ।

ବିଶେଷଜ୍ଞମାନେ ଜଣାଇ ଦେଲେଣି ଯେ କାଠ ଜାଳିବା ଦ୍ୱାରା ଯେଉଁ ଧୂମ (wood gas) ସୃଷ୍ଟି ହେଉଛି, ଏବଂ ଧୂମ ପାନ ଯୋଗୁଁ ଯେଉଁ ଧୂମ ସୃଷ୍ଟି ହେଉଛି, ତନ୍ମଧ୍ୟରେ ଅନେକ ପ୍ରକାର ପ୍ରକୃତିଗତ ସାମ୍ୟ ରହିଛି । ସିଗାରେଟ ଧୂଆଁରେ କ୍ୟାନ୍‌ସର ସୃଷ୍ଟିକାରୀ ଯେଉଁ ବେଞ୍ଜୋ (ଆ) ପାଇରିନ୍ [Benjo(a) pyrene] ଓ ଫର୍‌ମାଲଡିହାଇଡ୍ ଭଳି ବିଷାକ୍ତ ଗ୍ୟାସଗୁଡ଼ିକୁ ଚିହ୍ନଟ କରାଯାଇଛି, କାଠ ଜାଳିବା ଯୋଗୁଁ ଉତ୍ପନ୍ନ ଧୂଆଁରେ ମଧ୍ୟ ସେଗୁଡ଼ିକୁ ଠାବ କରାଯାଇଛି । ଆମେ ଜାଣୁ ଯେ ଧୂମ ପାନ କରୁଥିବା ବ୍ୟକ୍ତି (ଆକ୍ଟିଭ୍ ସ୍ମୋକର୍) ତାଙ୍କ ସମୀପରେ ଥିବା ଅନ୍ୟମାନଙ୍କୁ ମଧ୍ୟ ସେହି ବିଷାକ୍ତ ଧୂମ ଦ୍ୱାରା ପ୍ରଭାବିତ କରନ୍ତି । ଶେଷୋକ୍ତ ବ୍ୟକ୍ତିମାନଙ୍କୁ 'ପ୍ୟାସିଭ୍ ସ୍ମୋକର୍' କୁହାଯାଏ । ଧୂମପାନ ନ କରି ମଧ୍ୟ ସେମାନେ ଏହାର ଅନିଷ୍ଟକାରୀ ପ୍ରଭାବ ଦ୍ୱାରା କବଳିତ ହୁଅନ୍ତି । ଜଣେ ବ୍ୟକ୍ତି ଦିନକୁ ୪୦ଟି ସିଗାରେଟ ଟାଣୁଥିବା ଅବସରରେ ସମୀପବର୍ତ୍ତୀ ପ୍ୟାସିଭ୍ ସ୍ମୋକରମାନଙ୍କୁ ଯେଉଁ ପରିମାଣରେ ପ୍ରଭାବିତ କରନ୍ତି, ଗ୍ରାମାଞ୍ଚଳରେ ମହିଳାମାନେ ଚୁଲ୍ଲୀରେ ଜୈବବସ୍ତୁ

ଜାଳିବା ଅବସରରେ ତଦ୍‌ନିଃସୃତ ତଦନୁପାତିକ ଅନିଷ୍ଟକାରୀ ପ୍ରଭାବ ଦ୍ୱାରା ଆକ୍ରାନ୍ତ ହୁଅନ୍ତି । ସିଗାରେଟ୍ ଟାଣୁଥିବା ବ୍ୟକ୍ତିଙ୍କୁ ସେଥିରେ ଥିବା ଫିଲଟର କେତେକ ପରିମାଣରେ ଅନିଷ୍ଟକାରୀ ବିଷାକ୍ତ ଦ୍ରବ୍ୟଗୁଡ଼ିକର କୁପ୍ରଭାବରୁ ରକ୍ଷା କରିପାରେ; ମାତ୍ର ପ୍ୟାସିଭ୍ ସ୍ମୋକର୍‌ମାନେ କିମ୍ବା ଚୁଲ୍ଲୀ ନିକଟରେ ସମୟ ବିତାଉଥିବା ଗୃହିଣୀମାନେ ଏପରି ଯତ୍‌ସାମାନ୍ୟ ସୁବିଧା ଉପଭୋଗ କରିବାର ଅବକାଶ ନ ଥାଏ ।

ଶିଳ୍ପୋନ୍ନତ ରାଷ୍ଟ୍ରଗୁଡ଼ିକରେ ପରିଲକ୍ଷିତ ହେଉଛି ଯେ ଧୂମପାନ କରୁଥିବା ପୁରୁଷ ଓ ମହିଳାମାନେ କ୍ରୋନିକ୍ ବ୍ରୋଙ୍କାଇଟିସ୍ ଦ୍ୱାରା ଅକ୍ରାନ୍ତ ହୁଅନ୍ତି । ମାତ୍ର ବିକାଶଶୀଳ ରାଷ୍ଟ୍ରମାନଙ୍କରେ ପୁରୁଷମାନଙ୍କ ତୁଳନାରେ ଖୁବ୍ କମ୍ ସଂଖ୍ୟକ ମହିଳା ଧୂମପାନ କରନ୍ତି । ତଥାପି ଏହି ରାଷ୍ଟ୍ରଗୁଡ଼ିକରେ ଧୂମପାନକାରୀ ପୁରୁଷମାନଙ୍କ ସମେତ ବହୁସଂଖ୍ୟକ ମହିଳା କ୍ରୋନିକ୍ ବ୍ରୋଙ୍କାଇଟିସ୍ ଦ୍ୱାରା ଅକ୍ରାନ୍ତ ହୋଇଥିବାର ଜଣାପଡ଼ିଛି । ମହିଳାମାନେ ଏପରି ଦୁର୍ଦ୍ଦଶା ଭୋଗିବାର କାରଣ ହେଉଛି ଯେ ସେମାନେ ପ୍ରତ୍ୟହ ଘଣ୍ଟା ଘଣ୍ଟା ବ୍ୟାପୀ ରୋଷେଇ ଘରେ ଚୁଲ୍ଲୀ ନିକଟରେ ବସିରହିବା ଅବସରରେ ଜୈବ ବସ୍ତୁଗୁଡ଼ିକର ଦହନ ଯୋଗୁଁ ସୃଷ୍ଟ ବିଷାକ୍ତ ଗ୍ୟାସଗୁଡ଼ିକ ଦ୍ୱାରା ପ୍ରଭାବିତ ହୁଅନ୍ତି । ଦୀର୍ଘକାଳ ବ୍ୟାପୀ ଏପରି ବିଷାକ୍ତ ଗ୍ୟାସ୍ ଦ୍ୱାରା ପ୍ରଭାବିତ ହେବା ଫଳରେ ସେମାନେ ପଲ୍‌ମୋନାରୀ ହାଇପରଟେନ୍‌ସନ୍ ଓ କାର୍ଡ଼ିଆକ୍ ଏନ୍‌ଲାର୍ଜମେଣ୍ଟ ଆଦି ହୃଦ୍‌ରୋଗର ଶିକାର ହୁଅନ୍ତି । ହୃଦ୍‌ପିଣ୍ଡର ଡାହାଣ ପାର୍ଶ୍ୱ ସ୍ଫୀତ ହୋଇଯିବା ଫଳରେ (corpulmonale) ସେମାନଙ୍କ ମଧ୍ୟରୁ ଅନେକେ ମୃତ୍ୟୁ ବରଣ କରନ୍ତି ।

ଏଠାରେ ଚୁଲ୍ଲୀ ପାଖରେ ବସିଥିବା ଜଣେ ଗୃହିଣୀ ତଥା ଆକ୍ଟିଭ୍ ଓ ପ୍ୟାସିଭ୍ ସ୍ମୋକର୍ ଭାବରେ ଧୂମପାନ କରୁଥିବା ବ୍ୟକ୍ତିମାନଙ୍କ ମଧ୍ୟରେ ବିଷାକ୍ତ ଦ୍ରବ୍ୟଗୁଡ଼ିକର କୁପ୍ରଭାବ ଆଧାରିତ ଗୋଟିଏ ତୁଳନାତ୍ମକ ଅଧ୍ୟୟନ କରାଯାଉଛି ।

ଜଣେ ଚୁଲ୍ଲୀ-ବ୍ୟବହାରକାରିଣୀ ପ୍ରତି ୧ କିଲୋଗ୍ରାମ କାଠ ଜାଳିବା ଅବସରରେ ୪୦ ମିଲିଗ୍ରାମ କାର୍ବନ ମନୋକ୍ସାଇଡ୍ ଦ୍ୱାରା ପ୍ରଭାବିତ ହୁଅନ୍ତି; ମାତ୍ର ଆକ୍ଟିଭ୍ ଓ ପ୍ୟାସିଭ୍ ଧୂମପାନକାରୀମାନଙ୍କ ପାଇଁ ଏହାର ପରିମାଣ ଯଥାକ୍ରମେ ୧୭ ମିଲିଗ୍ରାମ୍/କିଲୋଗ୍ରାମ୍ ଓ ୪୩ ମିଲିଗ୍ରାମ୍ /କିଲୋଗ୍ରାମ୍ ହୋଇଥାଏ । ଗୋଟିଏ ଦହନକ୍ଷମ ଦ୍ରବ୍ୟ ଜାଳିବା ବେଳେ ସେଥିରୁ ବସ୍ତୁକଣିକା ଉତ୍ପନ୍ନ ହୁଏ । ଏହି ଅତୀବ କ୍ଷୁଦ୍ରାକୃତି ବସ୍ତୁକଣିକାଗୁଡ଼ିକ ବାୟୁ ସହିତ ମିଶି ଆମ ଶରୀରର ଅଭ୍ୟନ୍ତରରେ ପ୍ରବେଶ କରେ ଏବଂ ଏଥିପାଇଁ ଆମେ ବହୁବିଧ ବ୍ୟାଧି ଦ୍ୱାରା ପୀଡ଼ିତ ହେଉ । ଗୋଟିଏ ଜାଳେଣିରୁ ଉତ୍ପନ୍ନ ହେଉଥିବା ଏପରି ଅନିଷ୍ଟକାରୀ

ବସ୍ତୁକଣିକାର ପରିମାଣକୁ 'ମୋଟ ଭାସମାନ ବସ୍ତୁ କଣିକା' ବା 'total suspended particulate matter (T.S.P.)' ଆକାରରେ ମପାଯାଏ । ଜଣେ ଚୁଲ୍ଲା ବ୍ୟବହାରକାରିଣୀ ଏକ କିଲୋଗ୍ରାମ ଜୈବବସ୍ତୁ ଜାଳିବା ଅବସରରେ ୨ ଗ୍ରାମ TSPକୁ ଶ୍ୱାସକ୍ରିୟା ଅବଲମ୍ବନରେ ଶରୀର ଅଭ୍ୟନ୍ତରେ ପ୍ରବେଶ କରାଇବାକୁ ବାଧ୍ୟ ହୁଅନ୍ତି; ମାତ୍ର ଆକ୍ଟିଭ୍ ଓ ପ୍ୟାସିଭ୍ ଧୂମପାନକାରୀମାନଙ୍କ ପାଇଁ ଏହାର ପରିମାଣ ହେଉଛି ଯଥାକ୍ରମେ ୧୪ ଗ୍ରାମ୍/କିଲୋଗ୍ରାମ ଓ ୨୪ ଗ୍ରାମ୍/ କିଲୋଗ୍ରାମ୍ । ଜଣେ ଗୃହିଣୀ ଏକ କିଲୋଗ୍ରାମ ଜୈବବସ୍ତୁ ଜାଳିବା ଦ୍ୱାରା ୧ ମିଲିଗ୍ରାମ୍ ବେଞ୍ଜୋ(ଆ)ପାଇରିନ୍ ଓ ୦.୪ ଗ୍ରାମ୍ ଫର୍ମାଲ୍ଡିହାଇଡ୍ ଦ୍ୱାରା ପ୍ରଭାବିତ ହୁଅନ୍ତି । ମାତ୍ର ୧ କିଲୋଗ୍ରାମ ତମାଖୁର ଦହନ ଯୋଗୁଁ ଆକ୍ଟିଭ୍ ଓ ପ୍ୟାସିଭ୍ ସ୍ମୋକର୍‌ମାନେ ଯଥାକ୍ରମେ ୦.୦୧୮ ମିଲିଗ୍ରାମ୍ ଓ ୦.୦୬ ମିଲିଗ୍ରାମ ଏବଂ ୦.୦୩ ଗ୍ରାମ୍ ଓ ୧.୫ ଗ୍ରାମ୍ ବେଞ୍ଜୋ(ଆ)ପାଇରିନ୍ ଓ ଫର୍ମାଲଡିହାଇଡ୍ ଦ୍ୱାରା ପ୍ରଭାବିତ ହୁଅନ୍ତି ।

*** Comparison of exposure to various pollutants in chulha & cigarette smoke**

| Pollutant | Effect | Village Cook | Active | Passive |
|---|---|---|---|---|
| 1. Carbon monoxide mg/kg | Reduced oxygen to body tissues | 40 | 17 | 43 |
| 2. Particulates (TSP) | visibility, irritation and toxicity | 2 | 14 | 24 |
| 3. Benzo(a)pyrene mg/kg | precursor to cancer | 1 | 0.018 | 0.06 |
| 4. Formaldehyde g/kg | Irritant of eyes, nose, upper respiratory tract, possible cancer precursor | 0.4 | 0.03 | 1.5 |

* K.R. Smith, 1987, Air Pollution and Health : A Global Review, Plenum Press, New York

ଗୃହିଣୀମାନଙ୍କୁ ଆଭ୍ୟନ୍ତରୀଣ ବାୟୁ ପ୍ରଦୂଷଣ କବଳରୁ ଉଦ୍ଧାର କରିବାର ଏକମାତ୍ର ଉପାୟ ହେଉଛି ସେମାନଙ୍କୁ ରୋଷେଇ ପାଇଁ ଉପଯୁକ୍ତ ଅବସ୍ଥାପନା ତଥା ଉତ୍କୃଷ୍ଟ ଜାଳେଣି ଯୋଗାଇ ଦେବା । ଆମ ଦେଶରେ ଗ୍ରାମାଞ୍ଚଳର ସବୁ ଗୃହିଣୀଙ୍କୁ ଏଲ୍.ପି.ଜି. ଭଳି ରୋଷେଇ ପାଇଁ ଉଦ୍ଦିଷ୍ଟ ଗ୍ୟାସ ସିଲିଣ୍ଡର ଓ ଗ୍ୟାସ ଚୁଲ୍ଲା ଯୋଗାଇଦେବା ସମ୍ଭବ ନୁହେଁ । ଅଧିକାଂଶ ପରିବାରଗୁଡ଼ିକର ମଧ୍ୟ ଏହାକୁ

କିଣି ପାରିବା ଭଳି ଆର୍ଥିକ ସ୍ୱଚ୍ଛଳତା ନାହିଁ । କିରୋସିନିର ଦୁଷ୍ପ୍ରାପ୍ୟତା ଓ ଦୁର୍ଲଭତା ମଧ୍ୟ ଏକାଭଳି ସମସ୍ୟା ସୃଷ୍ଟି କରୁଛି । ଏଣୁ ଅଣପାରମ୍ପାରିକ ଶକ୍ତି ଉତ୍ସଗୁଡ଼ିକର ବ୍ୟାବସାୟିକ ସୂତ୍ରରେ ବ୍ୟାବହାରିକ ଉପଯୋଗ କରାଯିବା ଦିଗରେ ଏବେ ଗୁରୁତ୍ୱ ଆରୋପିତ ହୋଇଛି । ଏଥିପାଇଁ ଏକ ସ୍ୱତନ୍ତ୍ର ମନ୍ତ୍ରଣାଳୟ ଜରିଆରେ ଆନୁଷଙ୍ଗିକ ଗବେଷଣା ଓ ପ୍ରଗତିମୂଳକ କାର୍ଯ୍ୟକ୍ରମଗୁଡ଼ିକୁ କାର୍ଯ୍ୟକାରୀ କରାଯାଉଛି । ଗୋବର ଗ୍ୟାସ୍ ଓ ସୌରଶକ୍ତିର ବହୁଳ ପ୍ରସାର ଦିଗରେ ଏହି ମନ୍ତ୍ରଣାଳୟ ବିଶେଷ ସକ୍ରିୟ ହୋଇଥିବାର ଜଣାପଡ଼ିଛି । ସମକାଳୀନ ଭାବରେ ଏହି ମନ୍ତ୍ରଣାଳୟ ଆନୁକୂଲ୍ୟରେ ଅପେକ୍ଷାକୃତ ଅଳ୍ପ ଧୂମ ସୃଷ୍ଟି କରୁଥିବା ଉନ୍ନତ ଧରଣର ଚୁଲ୍ଲୀଗୁଡ଼ିକୁ ପ୍ରସ୍ତୁତ କରାଯାଉଛି ଏବଂ ଉପଭୋକ୍ତାମାନଙ୍କୁ ଏହାର ବହୁଳ ବ୍ୟବହାର କରିବା ପାଇଁ ପ୍ରୋତ୍ସାହିତ କରାଯାଉଛି । ଏବେ ବହୁ ଘରୋଇ ବ୍ୟବସାୟିକ ପ୍ରତିଷ୍ଠାନ ମଧ୍ୟ ଏ ଦିଗରେ ସମୟୋଚିତ ପଦକ୍ଷେପ ଗ୍ରହଣ କରୁଛନ୍ତି ଏବଂ ଅପେକ୍ଷାକୃତ ଅଳ୍ପ ପ୍ରଦୂଷଣ ଘଟାଇପାରୁଥିବା ଉପକରଣଗୁଡ଼ିକୁ ଆମ ଦେଶର ବଜାରମାନଙ୍କରେ ସୁଲଭ୍ୟ କରାଉଛନ୍ତି । ଆଶା କରାଯାଉଛି ଯେ, ମହିଳାମାନେ ନିଜ ନିଜ ସ୍ୱାର୍ଥ ଦୃଷ୍ଟିରୁ ଏ ଦିଗରେ ସଚେତନ ହୋଇ ପାରିଲେ ହିଁ ଆଧୁନିକ ବିଜ୍ଞାନାଶ୍ରୟୀ ନୂଆ ନୂଆ ବ୍ୟବସ୍ଥାଗୁଡ଼ିକୁ ବ୍ୟବହାର କରିବା ପାଇଁ ସ୍ୱତଃସ୍ଫୂର୍ତ୍ତ ଭାବରେ ଆଗ୍ରହୀ ହେବେ ଏବଂ ଏକବିଂଶ ଶତାବ୍ଦୀରେ ଏବଂବିଧ ଆଭ୍ୟନ୍ତରୀଣ ପ୍ରଦୂଷଣର ନିରାକରଣ ସମ୍ଭବ ହୋଇ ପାରିବ ।



# ୩

## ସହରାଞ୍ଚଳର ପରିସ୍ଥିତି

ସ୍ୱାଧୀନତା-ଉତ୍ତର ଭାରତବର୍ଷରେ ଜାତୀୟ ପ୍ରଗତି ସାଧନ ଉପଲକ୍ଷେ ଶିଳ୍ପାୟନ ପ୍ରତି ପ୍ରାଧାନ୍ୟ ଆରୋପିତ ହୋଇଛି । ଏଥିପାଇଁ ବିଗତ ପଚାଶ ବର୍ଷ ମଧ୍ୟରେ ଆମ ଦେଶରେ ଛୋଟ ବଡ଼ ସହର ଓ ଶିଳ୍ପାଞ୍ଚଳଗୁଡ଼ିକର ସଂଖ୍ୟା କ୍ରମବର୍ଦ୍ଧମାନ ରୂପ ଧାରଣ କରିଛି । କୃଷିକୁ ଜୀବିକା ରୂପେ ଆଦରି ନେଇଥିବା ଜନସଂଖ୍ୟାବହୁଳ ତଥା ଗ୍ରାମବହୁଳ ଅଞ୍ଚଳର ବାସିନ୍ଦାମାନେ କେବଳ କୃଷି ଉପରେ ନିର୍ଭର କରି ଜୀବିକା ନିର୍ବାହ କରିବାକୁ ଅସମର୍ଥ ହେଉଛନ୍ତି । କେବଳ କୃଷିର ସମୃଦ୍ଧି ସାଧନ ବଳରେ ସମସ୍ତଙ୍କ ପାଇଁ ଜୀବିକା ସୃଷ୍ଟି କରିବା ମଧ୍ୟ ସଂଭବ ହେଉନାହିଁ । ଭୂସଂସ୍କାର ବ୍ୟବସ୍ଥାକୁ ଠିକଣା ଭାବରେ କାର୍ଯ୍ୟକାରୀ କରାଯିବା ସଂଭବ ହେଉ ନଥିବାରୁ ବହୁ ନାମମାତ୍ର ଚାଷୀ ଓ ଭୂମିହୀନ ଶ୍ରମିକ ପେଟ ବିକଳରେ ସହରାଞ୍ଚଳ ଓ ଶିଳ୍ପାଞ୍ଚଳକୁ ଚାଲି ଆସୁଛନ୍ତି । ଏଣୁ ଏହି ଜନାକୀର୍ଣ୍ଣ ସହର ଓ ଶିଳ୍ପାଞ୍ଚଳମାନଙ୍କରେ ପରିବେଶୀୟ ସମସ୍ୟାରାଜି ଦିନକୁ ଦିନ ଉତ୍କଟ ଆକାର ଧାରଣ କରୁଛି । ଆମ ଦେଶର ମେଟ୍ରୋପଲିଟାନ ନଗରୀଗୁଡ଼ିକର ଦୁରବସ୍ଥା ଆତଙ୍କପ୍ରଦ ହୋଇଛି । ଛୋଟ ଛୋଟ ସହର ତୁଳନାରେ ଏହି ବୃହତ୍ ନଗରୀମାନଙ୍କରେ ଗ୍ରାମାଞ୍ଚଳରୁ ଚାଲି ଆସୁଥିବା ଧନ୍ଦା ଅନ୍ୱେଷଣକାରୀ ପରିବାରଗୁଡ଼ିକ ଭିଡ଼ ଜମାଉଛନ୍ତି । ସହରାଞ୍ଚଳର ପରିବେଶୀୟ ସମସ୍ୟାଗୁଡ଼ିକ ଦିନକୁ ଦିନ ଅସହ୍ୟ ହେଉଥିଲେ ମଧ୍ୟ ସରକାରୀ କର୍ତ୍ତୃପକ୍ଷ ଏ ଦିଗରେ ସମୁଚିତ ଆଇନ ପ୍ରଣୟନ କରିବାକୁ କିମ୍ବା ପ୍ରଚଳିତ ଆଇନଗୁଡ଼ିକୁ ବିଧିବଦ୍ଧ ଭାବରେ ପାଳନ କରିବାକୁ ଅସମର୍ଥ ହୋଇଛନ୍ତି । ଦୁର୍ନୀତି ପରାୟଣ ରାଜନୈତିକ ନେତୃବର୍ଗ ଓ ସୁବିଧାବାଦୀ ଅମଲାତନ୍ତ୍ର ସହରାଞ୍ଚଳର ସମସ୍ୟାଗୁଡ଼ିକ ପ୍ରତି ଆଖି ବୁଜିଦେବାକୁ ହିଁ ଶ୍ରେୟସ୍କର ମଣୁଛନ୍ତି । ବିଭବଶାଳୀ ଓ ଉଚ୍ଚ ମଧ୍ୟବିତ୍ତ ପରିବାରଗୁଡ଼ିକ ଅର୍ଥ ଓ ପ୍ରତିପତ୍ତି ବଳରେ ନିଜ ନିଜ କ୍ରମବର୍ଦ୍ଧମାନ କାମନାର ପରିପୂରଣ ପାଇଁ ସ୍ଥିତାବସ୍ଥାରୁ ଫାଇଦା ଉଠାଇବା ଅବସରରେ ରାଜନୈତିକ ନେତୃବର୍ଗ ୦ ପ୍ରସାର ମାଧ୍ୟମଗୁଡ଼ିକ

ମଧ୍ୟ ସେମାନଙ୍କ ସ୍ୱାର୍ଥ ଦୃଷ୍ଟିରୁ ବହୁଦେଶୀୟ କର୍ପୋରେସନ୍‌ଗୁଡ଼ିକର (MNCs) ସ୍ୱାର୍ଥାନୁକୂଳ କାର୍ଯ୍ୟକ୍ରମଗୁଡ଼ିକୁ କାର୍ଯ୍ୟକାରୀ କରାଇବାକୁ ଲାଭପ୍ରଦ ମଣୁଛନ୍ତି । ନୀତି ପ୍ରଣୟନ ଏବଂ ଶ୍ରୁତିମଧୁର ସ୍ଲୋଗାନ ଓ ବିଜ୍ଞାପନଗୁଡ଼ିକ ଜରିଆରେ ଜନସାଧାରଣଙ୍କୁ ସନ୍ତୁଷ୍ଟ କରାଯିବାର ଅପଚେଷ୍ଟା ଅବ୍ୟାହତ ରହିଛି । ଦାରୁଣ ଦୁର୍ଦ୍ଦଶାର ସମ୍ମୁଖୀନ ହୋଇଥିବା ସହରାଞ୍ଚଳର ବାସିନ୍ଦାମାନେ ଏ ଦିଗରେ ଆଶାନୁରୂପ ଜନମତ ସୃଷ୍ଟିକରିବାକୁ ମଧ୍ୟ ଅସମର୍ଥ ହୋଇଛନ୍ତି । ତଥାପି, କତିପୟ ବ୍ୟକ୍ତିବିଶେଷ ଓ ସ୍ୱେଚ୍ଛାସେବୀ ସଂଗଠନ ଉଚ୍ଚତମ ନ୍ୟାୟାଳୟର (public interest litigation) ଆଶ୍ରୟ ନେବା ଫଳରେ ସ୍ଥିତାବସ୍ଥାରେ ପରିବର୍ତ୍ତନ ଘଟାଇବା ପାଇଁ ଇତ୍ୟବସରରେ ବାଧ୍ୟତାମୂଳକ ଭାବରେ କେତେକ ପଦକ୍ଷେପ କାର୍ଯ୍ୟକାରୀ ହୋଇଛି; ମାତ୍ର ଆନ୍ତରିକତା ଓ କର୍ତ୍ତବ୍ୟନିଷ୍ଠାର ଅଭାବ ଯୋଗୁଁ ନ୍ୟାୟାଧୀଶମାନଙ୍କ ନିର୍ଦ୍ଦେଶଗୁଡ଼ିକୁ ମଧ୍ୟ ଠିକଣା ଭାବରେ କାର୍ଯ୍ୟକାରୀ କରାଯିବା ସଂଭବ ହେଉନାହିଁ ।

ଆମ ଦେଶର ସହରାଞ୍ଚଳର ବାୟୁ ପ୍ରଦୂଷଣ ଓ ତତ୍‌ପ୍ରସୂତ ବିଘଟଣଗୁଡ଼ିକ ସମ୍ବନ୍ଧରେ ପ୍ରତ୍ୟହ ପ୍ରସାର ମାଧ୍ୟମଗୁଡ଼ିକ ଜରିଆରେ ଚାଞ୍ଚଲ୍ୟକର ତଥ୍ୟଗୁଡ଼ିକୁ ପ୍ରକାଶ କରାଯାଉଛି । ଆମ ଦେଶର ରାଜଧାନୀ ନୂଆଦିଲ୍ଲୀ ଇତ୍ୟବସରରେ ପୃଥିବୀର ଗୋଟିଏ ପ୍ରମୁଖ ପ୍ରଦୂଷିତ ନଗରୀ ଭାବରେ ଅପବାଦିତ ହୋଇଛି । ବୃହତ୍ ନଗରୀଗୁଡ଼ିକ ସମେତ ଛୋଟ ଛୋଟ ସହରରେ ବାୟୁ ପ୍ରଦୂଷଣର ତୀବ୍ରତା ମଧ୍ୟ ଜନଜୀବନକୁ ଅସ୍ତବ୍ୟସ୍ତ କରୁଛି । ଗୁଜୁରାଟର ରାଜକୋଟ, ଉତ୍ତର ପ୍ରଦେଶର ଗାଜବୁଲା ଓ ଡେରାଡୁନ ଭଳି ସହରଗୁଡ଼ିକରେ ବାୟୁ ପ୍ରଦୂଷଣ ଉତ୍କଟ ଆକାର ଧାରଣ କରିଛି । କେନ୍ଦ୍ରୀୟ ପ୍ରଦୂଷଣର ନିୟନ୍ତ୍ରଣ ବୋର୍ଡ଼ (CPCB) କେତେକ ବୃହତ୍ ନଗରୀର ବାୟୁ ପ୍ରଦୂଷଣ ତୀବ୍ରତା ସମ୍ପର୍କରେ ପ୍ରାମାଣିକ ତଥ୍ୟରାଜି ଉପସ୍ଥାପନା କରୁଛନ୍ତି ଏବଂ ପ୍ରଦୂଷଣକୁ ମନିଟର କରିବା ଦାୟିତ୍ୱଟିକୁ ଅବ୍ୟାହତ ରଖିଛନ୍ତି । ମାତ୍ର ଅର୍ଥାଭାବ ଯୋଗୁଁ ଏ ପ୍ରକାର ମନିଟରିଙ୍ଗ୍ ପ୍ରକ୍ରିୟା ସବୁ ସହରରେ କାର୍ଯ୍ୟକାରୀ କରାଯିବା ସଂଭବ ହେଉନାହିଁ । ଏଥିପାଇଁ ଅଗରତଲା ଓ ଶ୍ରୀନଗର ଭଳି ଛୋଟ ସହରଗୁଡ଼ିକରେ ବାୟୁ ପ୍ରଦୂଷଣର ତୀବ୍ରତା ଅତ୍ୟଧିକ ହୋଇଥିଲେ ମଧ୍ୟ ପ୍ରତିକାରମୂଳକ ବ୍ୟବସ୍ଥାଗୁଡ଼ିକୁ ଠିକଣା ଭାବରେ କାର୍ଯ୍ୟକାରୀ କରାଯିବା ସଂଭବ ହେଉନାହିଁ । ଆମ ଦେଶର ସହରମାନଙ୍କରେ ଅତ୍ୟଧିକ ପରିମାଣର ବିଷାକ୍ତ ଗ୍ୟାସ ସୃଷ୍ଟି କରୁଥିବା ଟୁ-ଷ୍ଟ୍ରୋକ୍ (Two-Stroke) ଇଂଜିନଗୁଡ଼ିକର ବହୁଳ ବ୍ୟବହାର କରାଯାଉଛି । ଏଥିପାଇଁ ବାୟୁରେ କ୍ୟାନସର ସୃଷ୍ଟିକାରୀ ବେନ୍‌ଜିନ୍‌ର (Benzene) ପରିମାଣ ବଢ଼ିବାରେ ଲାଗିଛି । ଇତର ବିଷାକ୍ତ ଗ୍ୟାସଗୁଡ଼ିକର

ମନିଟରିଙ୍ଗ ପାଇଁ, ସନ୍ତୋଷପ୍ରଦ ହୋଇନଥିଲେ ମଧ, ଆନୁଷଙ୍ଗିକ ନିୟନ୍ତ୍ରଣକାରୀ ବ୍ୟବସ୍ଥାଗୁଡ଼ିକୁ କାର୍ଯ୍ୟକାରୀ କରାଯାଉଥିଲେ ସୁଦ୍ଧା ଏ ଯାବତ୍ ବେଞ୍ଜିନର ତୀବ୍ରତାରେ ହ୍ରାସ ଘଟାଇବା ଉଦ୍ଦେଶ୍ୟରେ କୌଣସି ପ୍ରତିଷେଧମୂଳକ ବ୍ୟବସ୍ଥାକୁ କାର୍ଯ୍ୟକାରୀ କରାଯିବା ସଂଭବ ହୋଇନାହିଁ । ନୂଆଦିଲ୍ଲୀରେ ୟୁରୋପୀୟାନ ଷ୍ଟାଣ୍ଡାର୍ଡ ତୁଳନାରେ ବାୟୁରେ ବେଞ୍ଜିନର ମାତ୍ରା ଦଶ ଗୁଣ ଅଧିକ ହୋଇଥିଲେ ମଧ (CPCB) କର୍ତ୍ତୃପକ୍ଷ ଏହାର ପ୍ରତିକାର ଦିଗରେ ଅଦ୍ୟାବଧି ଉଦାସୀନ ରହିଛନ୍ତି । ଡିଜେଲ ଧୂଆଁ ମାରାତ୍ମକ କ୍ୟାନସର ସୃଷ୍ଟିକାରୀ ବିଷାକ୍ତ ଦ୍ରବ୍ୟଗୁଡ଼ିକୁ ଧାରଣ କରିଥିଲେ ମଧ ଘରୋଇ ଭାବରେ ବ୍ୟବହାର କରାଯାଉଥିବା ମଟର ଗାଡ଼ିମାନଙ୍କରେ  ଡିଜେଲକୁ ହିଁ ଇନ୍ଧନ ଭାବରେ ବ୍ୟବହାର କରାଯାଉଛି । ପେଟ୍ରୋଲ ତୁଳନାରେ ଡିଜେଲର ଦାମକୁ ଅପେକ୍ଷାକୃତ କମ୍ ରଖାଯିବାର ନୀତି କାର୍ଯ୍ୟକାରୀ ହେଉଥିବାରୁ ଡିଜେଲ ଚାଳିତ ଇଂଜନଗୁଡ଼ିକର ଚାହିଦା ଦିନକୁ ଦିନ ବଢ଼ିବାରେ ଲାଗିଛି । ଆମେ ଜାଣୁ ଯେ ସାରା ପୃଥିବୀର ବିଭିନ୍ନ ଦେଶମାନଙ୍କରେ ଉପଯୁକ୍ତ ବିଶୋଧନ ପ୍ରକ୍ରିୟା ଅବଲମ୍ବନରେ ଯେଉଁ ପ୍ରକାର ଡିଜେଲ ଉତ୍ପାଦନ କରାଯାଉଛି, ତା' ତୁଳନାରେ ଆମ ଦେଶରେ ଉତ୍ପାଦିତ ଡିଜେଲର ଗୁଣାତ୍ମକ ମାନ ଅତି ନିକୃଷ୍ଟ ଧରଣର ହୋଇଛି । ଡିଜେଲର ଗୁଣାତ୍ମକ ମାନରେ ଅଭିବୃଦ୍ଧି ଘଟାଇବାର ବ୍ୟାପାରକୁ ସ୍ୱୀକାର କରାଯାଉଥିଲେ ମଧ ସରକାରୀ କର୍ତ୍ତୃପକ୍ଷ ସୂଚାଉଛନ୍ତି ଯେ ଏହା ଗୋଟିଏ ସମସ୍ୟାବହୁଳ ଓ ବ୍ୟୟବହୁଳ ବ୍ୟାପାର। ମାତ୍ର ସମକାଳୀନ ଭାବରେ ସେହି ସରକାରୀ କର୍ତ୍ତୃପକ୍ଷ ଡିଜେଲ ଇଂଜନ ବ୍ୟବହୃତ ତଥା ପୁରୁଣା ଟେକ୍‌ନୋଲଜି ଅବଲମ୍ବନରେ ପ୍ରସ୍ତୁତ ବିଦେଶୀ ମଟରଗାଡ଼ିଗୁଡ଼ିକର ଆମଦାନୀ ଦିଗରେ ବେଶ୍ ଉତ୍ସାହପ୍ରଦ ଭୂମିକା ଗ୍ରହଣ କରୁଛନ୍ତି । ଶିଳ୍ପୋନ୍ନତ ଦେଶମାନଙ୍କରେ ଯେଉଁ ଟେକ୍‌ନୋଲଜି ବାଜ୍ୟାପ୍ତ ହେଉଛି ଏବଂ ଯାହା ସେଠାକାର ଉପଭୋକ୍ତାମାନଙ୍କର ଗ୍ରହଣଯୋଗ୍ୟ ହେଉନାହିଁ, ସେଗୁଡ଼ିକୁ ସେମାନେ ବିଚକ୍ଷଣ ବ୍ୟାବସାୟିକ କାରସାଦୀ ବଳରେ ଆମ ଦେଶ ତଥା ଅନ୍ୟ ବିକାଶଶୀଳ ରାଷ୍ଟ୍ରଗୁଡ଼ିକୁ ରପ୍ତାନୀ କରୁଛନ୍ତି । ଡିଜେଲ ଚାଳିତ ଏହି ନୂଆ ନୂଆ ମଟରଗାଡ଼ିଗୁଡ଼ିକର କାଟ୍‌ତି ପାଇଁ ଉପଭୋକ୍ତାମାନଙ୍କୁ ବିଭିନ୍ନ ପ୍ରକାର ମନଲୋଭା ବିଜ୍ଞାନପନଗୁଡ଼ିକ ଦ୍ୱାରା ପ୍ରଲୋଭିତ କରାଯାଉଛି । ଆମ ଜାତୀୟ ଦୂରଦର୍ଶନ ପ୍ରସାରଣ ସମେତ ସବୁ ଚାନେଲଗୁଡ଼ିକରେ ଏ ପ୍ରକାର ମଟରଗାଡ଼ିର ବିଜ୍ଞାପନଗୁଡ଼ିକୁ ଦୈନିକ ବାରମ୍ବାର ପ୍ରଦର୍ଶନ କରାଯାଉଛି । ସେହି ଦେଶମାନଙ୍କରେ ଡିଜେଲ ଚାଳିତ ମଟରଗାଡ଼ିଗୁଡ଼ିକ ପାଇଁ ଯେଉଁ ୟୁରୋ-II ଷ୍ଟାଣ୍ଡର୍ଡ଼କୁ ପ୍ରଦୂଷଣର ପ୍ରତିରୋଧ ଦିଗରେ କଡ଼ାକଡ଼ି ଭାବରେ ବ୍ୟବହାର କରାଯାଉଛି, ଆମ ଦେଶରେ

ସେପରି ବ୍ୟବସ୍ଥାର ପ୍ରଚଳନ ଘଟି ପାରିବା ଭଳି ପରିବେଶର ସର୍ଜନା ମଧ ସଂଭବ ହୋଇ ନାହିଁ । ମଟର ଗାଡ଼ି ହିଁ ସାମାଜିକ ମର୍ଯ୍ୟାଦାର ପରିଚାୟକ ହୋଇଛି । ଏଣୁ ଏହି ବିଦେଶୀ ଗାଡ଼ିଗୁଡ଼ିକୁ କିଣିବା ପାଇଁ ଉଚ୍ଚ ମଧବିତ୍ତ ପରିବାରଗୁଡ଼ିକ ପ୍ରଲୁବ୍ଧ ହେଉଛନ୍ତି । ଅମଲାତନ୍ତ୍ର ମଧ ଏ ଦିଗରେ ଉଦାସୀନ ନୀତି ଅନୁସରଣ କରୁଛି କାରଣ, ମଟରଗାଡ଼ି ହିଁ ସେମାନଙ୍କ ପାଇଁ ଏକ ଲାଭ ପ୍ରଦାୟକ ବ୍ୟବସ୍ଥା ହୋଇଛି । ଆଜିର ଭାରତବର୍ଷରେ ବିନା ମଟରଗାଡ଼ିରେ ହାକିମମାନଙ୍କ ସ୍ଥାୟିତ୍ୱ ସଂପର୍କରେ ଚିନ୍ତା କରିବା ମଧ ସଂଭବ ନୁହେଁ । ଏପରି ପରିସ୍ଥିତିରେ ଜନସାଧାରଣ ବାୟୁ ପ୍ରଦୂଷଣ ଯୋଗୁଁ ଦୁର୍ବିସହ ଜୀବନ ବିତାଉଥିଲେ ମଧ ସ୍ଥିତାବସ୍ଥାର ପ୍ରତିକାର ଦିଗରେ ସ୍ୱର ଉତ୍ତୋଳନ କରିବାକୁ ଅସମର୍ଥ ହୋଇଛନ୍ତି । ସୁଖର କଥା ଯେ ଆଲୋଚ୍ୟ ରିପୋର୍ଟଟି ପ୍ରକାଶିତ ହେବା ପରେ ଉଚ୍ଚତମ ନ୍ୟାୟାଳୟ ଏପରି ବିଘଟଣର ପ୍ରତିକାର ପାଇଁ ଗୋଟିଏ ନିଷ୍ପତ୍ତିମୂଳକ ପଦକ୍ଷେପ ଗ୍ରହଣ କରିଛନ୍ତି । ସୁପ୍ରିମ୍ କୋର୍ଟର ନ୍ୟାୟାଧୀଶମାନେ ଗୋଟିଏ ରାୟ ପ୍ରକାଶ କରିଛନ୍ତି ଯେ ୨୦୦୦ ମସିହାର ପ୍ରାରମ୍ଭ କାଳଠାରୁ ୟୁରୋ-।। ଷ୍ଟାଣ୍ଡାର୍ଡ଼ ଅନୁଯାୟୀ ପ୍ରତିଷେଧମୂଳକ ବ୍ୟବସ୍ଥା ଗ୍ରହଣ କରି ନ ଥିବା ମଟରଗାଡ଼ିଗୁଡ଼ିକ ଆଉ ନୂଆଦିଲ୍ଲୀର ରାଜପଥରେ ଚଳପ୍ରଚଳ କରି ପାରିବେ ନାହିଁ ଏବଂ ଏପରି ସୁବିଧା ନ ଥିବା ଗାଡ଼ିଗୁଡ଼ିକର ଆମଦାନୀକୁ ନିଷେଧ କରାଯିବ । ଏହି ନିଷ୍ପତ୍ତି ଘୋଷଣା କରିବା ଅବସରରେ ସଂପୃକ୍ତ ବିଚାରପତିମାନେ ବିସ୍ମୟ ପ୍ରକାଶ କରିଛନ୍ତି ଯେ କ'ଣ ପାଇଁ ପୁରୁଣା ଟେକ୍‌ନୋଲଜି ଅବଲମ୍ବନରେ ଉତ୍ପାଦିତ ବିଦେଶୀ ଗାଡ଼ିଗୁଡ଼ିକୁ ଆମ ଦେଶକୁ ଆମଦାନୀ କରାଯାଉଛି । ଉଭୟ ସ୍ୱଦେଶୀ ଓ ବିଦେଶୀ ମଟର ଗାଡ଼ି ୨୦୦୦ ମସିହାଠାରୁ ୟୁରୋ-।। ଷ୍ଟାଣ୍ଡାର୍ଡ଼ ଅବଲମ୍ବନରେ ଚଳ ପ୍ରଚଳ ହୋଇ ପାରିବାର ଏହି ଐତିହାସିକ ନିଷ୍ପତ୍ତି ପରିବେଶ-ବିଜ୍ଞାନୀ ଓ ପରିବେଶ-ସଚେତନ ଜନସାଧାରଣଙ୍କ ମାନସପଟରେ ନୂତନ ଆଶାର ସଂଚାର ଘଟାଇଛି । ଏଥିରୁ ଜଣା ପଡୁଛି ଯେ ରାଜନୈତିକ, ବ୍ୟାବସାୟିକ ଓ ପ୍ରଶାସନିକ କ୍ଷେତ୍ରରେ ସୃଷ୍ଟ ଅନ୍ୟାୟ, ଅନୀତି ଓ ଦୁରାଚାର ବିରୋଧରେ ଆମ ଦେଶର ନ୍ୟାୟଳୟଗୁଡ଼ିକ ଠିକଣା ସମୟରେ ଠିକଣା ନିଷ୍ପତ୍ତି ଗ୍ରହଣ କରି ପାରିବେ ଏବଂ ପରିବେଶ-ସଚେତନ ଜନସାଧାରଣଙ୍କ ଦୃଢ଼ ଅଭିବ୍ୟକ୍ତି ବଳରେ ସରକାର ଏହି ନିଷ୍ପତ୍ତିଗୁଡ଼ିକର ଯଥାବିଧି କାର୍ଯ୍ୟକାରିତା ଦିଗରେ ଅମଲାତନ୍ତ୍ରକୁ ସକ୍ରିୟ କରାଇବାକୁ ବାଧ୍ୟ ହେବେ ।

ଏଠାରେ ପରିବେଶୀୟ ପ୍ରଦୂଷଣ ଭିତ୍ତିକ ଗୋଟିଏ ତାତ୍ପର୍ଯ୍ୟପୂର୍ଣ୍ଣ ବିଭାବ ସମ୍ପର୍କରେ ଆଲୋକ ପାତ କରିବା ସମୀଚୀନ ବୋଧ ହେଉଛି । ପରିବେଶର ଅହିତକାରୀ ପରିବର୍ତ୍ତନ ଘଟୁଥିବା ଯୋଗୁଁ ଗୋଟିଏ ଅଞ୍ଚଳର ବାସିନ୍ଦାମାନଙ୍କର

ବିଭିନ୍ନ ପ୍ରକାରେ ସ୍ୱାସ୍ଥ୍ୟହାନୀ ଘଟୁଛି । ଆମ ଦେଶରେ ଏହି ଅବ୍ୟାପାର ବିରୋଧରେ ଉପଯୁକ୍ତ ପ୍ରତିଷେଧମୂଳକ ବ୍ୟବସ୍ଥାଗୁଡ଼ିକୁ କାର୍ଯ୍ୟକାରୀ କରାଇବା କ୍ଷେତ୍ରରେ କୌଣସି ମନ୍ତ୍ରଣାଳୟ ନିଜକୁ ଦାୟୀ କରିବାକୁ ଅମଙ୍ଗ ହେଉଛନ୍ତି । ସ୍ୱାସ୍ଥ୍ୟ ମନ୍ତ୍ରଣାଳୟ ଘୋଷଣା କରୁଛନ୍ତି ଯେ ଏହି ଦାୟିତ୍ୱ ପରିବେଶ ଓ ଜଙ୍ଗଲ ମନ୍ତ୍ରଣାଳୟ (MEF) ଉପରେ ନ୍ୟସ୍ତ ହୋଇଛି । ମାତ୍ର ଶେଷୋକ୍ତ ମନ୍ତ୍ରଣାଳୟ କୌଣସି ଅପ୍ରୀତିକର ଘଟଣା ଘଟିବା କ୍ଷଣି ନିଜ ମୁଣ୍ଡରୁ ଦୋଷ ଖସାଇ ଦେବା ପୂର୍ବକ ସ୍ୱାସ୍ଥ୍ୟ ମନ୍ତ୍ରଣାଳୟକୁ ଏଥିପାଇଁ ଦାୟୀ କରୁଛି । ଏ ପ୍ରକାର ଯେଉଁ ଅବାଞ୍ଛିତ ରିଲେ ପ୍ରତିଯୋଗିତା ଚାଲିଛି ତାହାର କୁପରିଣତି ସ୍ୱରୂପ ବାୟୁ ପ୍ରଦୂଷଣ ଯୋଗୁଁ ପ୍ରତି ବର୍ଷ ଆମ ଦେଶରେ ୫୦,୦୦୦ ଠାରୁ ଏକ ଲକ୍ଷ ପର୍ଯ୍ୟନ୍ତ ବାସିନ୍ଦା ମୃତ୍ୟୁ କବଳିତ ହେଉଛନ୍ତି ଏବଂ ଜଳ ପ୍ରଦୂଷଣ ଯୋଗୁଁ ପ୍ରତିବର୍ଷ ପ୍ରାୟ ଏକ ନିୟୁତ ବା ଦଶ ଲକ୍ଷ ବାସିନ୍ଦା ମୃତ୍ୟୁର ଶିକାର ହେଉଛନ୍ତି । ଦଶ ବର୍ଷ ମଧ୍ୟରେ ଦଶ ନିୟୁତ ବ୍ୟକ୍ତି ମୃତ୍ୟୁର ଶିକାର ହେଉଥିବା ବେଳେ ଏଥିପାଇଁ କେହି ଦାୟୀ ହୋଇଥିବା ପରି ଜଣା ପଡୁନାହିଁ । ଯେଉଁମାନେ ବିଭିନ୍ନ ଶାରୀରିକ ଯନ୍ତ୍ରଣା ଭୋଗୁଛନ୍ତି ଏବଂ ଯେଉଁମାନେ ସେମାନଙ୍କ ଦୁର୍ଦ୍ଦଶା ସମ୍ପର୍କରେ ସମ୍ବାଦ ପରିବେଷଣ କରୁଛନ୍ତି, ସେମାନେ ଉଭୟେ ଦୁର୍ଗତିପ୍ରବଣ ପରିବେଶୀୟ ପ୍ରଦୂଷଣର ପ୍ରତିକାର ଦିଗରେ ବିହୀତ ପଦକ୍ଷେପ ଗ୍ରହଣ କରିବା ପାଇଁ ସଂପୃକ୍ତ କର୍ତ୍ତୃପକ୍ଷଙ୍କୁ ପ୍ରବର୍ତ୍ତାଇ ପାରୁ ନାହାନ୍ତି ।

ନିମ୍ନଲିଖିତ ତଥ୍ୟରାଜିରୁ ଆମେ ଅନାୟାସରେ ବୁଝି ପାରିବା ଯେ ଆମ ଦେଶର ସହରାଞ୍ଚଳମାନଙ୍କରେ ବାୟୁ ପ୍ରଦୂଷଣର ତୀବ୍ରତା କେତେ ଆତଙ୍କପ୍ରଦ ହୋଇଛି । ପ୍ରକୃତ ପକ୍ଷେ ଆମ ଦେଶର ସହରାଞ୍ଚଳଗୁଡ଼ିକୁ ବିଷାକ୍ତ ଗ୍ୟାସ ପ୍ରକୋଷ୍ଠ ବା 'Lethal Gas Chambers' ଭାବରେ ବିଚାର କରିବା ହିଁ ଯୁକ୍ତିଯୁକ୍ତ ବୋଧ ହେଉଛି ।

(i) ଦିଲ୍ଲୀର ପ୍ରତି ଦଶ ଜଣରେ ଜଣେ ସ୍କୁଲ ପିଲା ଆଶ୍ଥମା (Asthma) ଦ୍ୱାରା ଆକ୍ରାନ୍ତ ହୋଇଛି ।

(ii) ଆମ ଦେଶରେ ୩୩ଟି ବଡ଼ ବଡ଼ ସହରରେ ବାୟୁ ପ୍ରଦୂଷଣ ଯୋଗୁଁ ମୃତ୍ୟୁ-ସଂଖ୍ୟା ୪୦୦୦୦ ଠାରୁ ୫୨୦୦୦ ପର୍ଯ୍ୟନ୍ତ ହୋଇଛି । ୧୯୯୧-୯୨ ଆର୍ଥିକ ବର୍ଷଠାରୁ ତିନି ଚାରି ବର୍ଷ ମଧ୍ୟରେ ମୃତ୍ୟୁର ହାର ଶତକଡ଼ା ୩୦ ଭାଗ ପର୍ଯ୍ୟନ୍ତ ବଢ଼ି ଯାଇଛି ।

(iii) ଯୁକ୍ତରାଷ୍ଟ୍ର ଆମେରିକାର 'Centre for Disease Control and

Prevention' ନାମକ ଗୋଟିଏ ପ୍ରତିଷ୍ଠାନ ରକ୍ତରେ ସୀସା (Lead)ର ଆନୁପାତିକ ପରିମାଣ ସମ୍ପର୍କରେ ଗୋଟିଏ ସର୍ବୋଚ୍ଚ ସୀମା ନିର୍ଦ୍ଧାରଣ କରିଛନ୍ତି । ଏହି ସୀମାଠାରୁ ରକ୍ତରେ ସୀସାର ପରିମାଣ ଅଧିକ ହେଲେ ମନୁଷ୍ୟ ବିପଦାପନ୍ନ ପରିସ୍ଥିତିର ସମ୍ମୁଖୀନ ହୁଏ । ମାତ୍ର ନୂଆଦିଲ୍ଲୀର ପିଲାମାନଙ୍କ ରକ୍ତ ପରୀକ୍ଷା କରାଯିବା ପରେ ଜଣାପଡ଼ିଛି ଯେ ପରୀକ୍ଷିତ ପିଲାମାନଙ୍କ ମଧ୍ୟରୁ ଶତକଡ଼ା ୪୧ ଭାଗ ପିଲାଙ୍କ ରକ୍ତରେ ସୀସାର ପରିମାଣ ନିରାପଦ-ସୀମାଠାରୁ (Safe limit) ଯଥେଷ୍ଟ ଅଧିକ ହୋଇଛି ।

(iv) ଆମ ଦେଶର ବାସିନ୍ଦାମାନେ ବାୟୁ ପ୍ରଦୂଷଣ ଯୋଗୁଁ ସୃଷ୍ଟ ବ୍ୟାଧିଗୁଡ଼ିକର ଉପଶମ ପାଇଁ ବର୍ଷ ପିଛା ୪୬୬୦ କୋଟି ଟଙ୍କା ଖର୍ଚ୍ଚ କରୁଛନ୍ତି ।

ସହରାଞ୍ଚଳର ବାୟୁ ପ୍ରଦୂଷଣର ତୀବ୍ରତା ଏପରି ଭୟଙ୍କର ହୋଇଥିବା ସ୍ଥଳେ ପେଟ୍ରୋଲିୟମ ମନ୍ତ୍ରଣାଳୟର ମନ୍ତ୍ରୀ ଘୋଷଣା କରିଛନ୍ତି ଯେ ସେ ଏଣିକି ପେଟ୍ରୋଲ ତୁଳନାରେ ଡିଜେଲ ଦରକୁ ଆହୁରି କମାଇ ଦେବା ଦିଗରେ ଯତ୍ନବାନ୍ ହେବେ । ଅଜ୍ଞତା ଓ ମାନସିକ ଦାରିଦ୍ର୍ୟ ପ୍ରପୀଡ଼ିତ ଏ ରୂପ ରାଜନୈତିକ ନେତୃବର୍ଗଙ୍କଠାରୁ ଆମେ କ'ଣ ବା ଆଶା କରିବା ? ସମକାଳୀନ ଭାବରେ ପେଟ୍ରୋଲିୟମ୍ ବିଭାଗର ସେକ୍ରେଟାରୀ ସୂଚାଇଛନ୍ତି ଯେ ଡିଜେଲର ଗୁଣାତ୍ମକ ମାନ ବଢ଼ାଇବା ପାଇଁ ସରକାରଙ୍କ ହାତରେ ପଇସା ନାହିଁ । ଯଦି ଅର୍ଥନୈତିକ ଅବସ୍ଥା ଶୋଚନୀୟ ହୋଇଛି, ଡିଜେଲଚାଳିତ ଗାଡ଼ିଗୁଡ଼ିକର ଆମଦାନୀ ବିରୋଧରେ ତଥା ଅତ୍ୟଧିକ ପ୍ରଦୂଷଣ ସୃଷ୍ଟିକାରୀ ପୁରୁଣା ଗାଡ଼ିଗୁଡ଼ିକର ପ୍ରଚଳନ ବିରୋଧରେ ସରକାର କାହିଁକି ପ୍ରତିଷେଧମୂଳକ ପଦକ୍ଷେପ ଗ୍ରହଣ କରୁ ନାହାନ୍ତି ? ଏ ପ୍ରଶ୍ନର ଉତ୍ତର ଦେବାକୁ କେହିନାହିଁ । ଗଣ-ପରିବହନ (Mass Transport) ବ୍ୟବସ୍ଥାକୁ ସୁଦୃଢ଼ କରାଯାଇ ପାରିଲେ ଏବଂ ବୈୟକ୍ତିକ ଭାବରେ ମଟର ଗାଡ଼ି ବ୍ୟବହାର କରିବା ବ୍ୟାପାରକୁ ବିଭିନ୍ନ ଅର୍ଥନୈତିକ କଟକଣା ବଳରେ ନିୟନ୍ତ୍ରଣ କରାଯିବା ସମ୍ଭବ ହେଲେ ପରିବହନ ଯୋଗୁଁ ସୃଷ୍ଟ ବାୟୁ ପ୍ରଦୂଷଣ ବେଶ୍ ଲକ୍ଷ୍ୟଣୀୟ ମାର୍ଗରେ ଲାଘବ ହୋଇ ପାରିବ । ମାତ୍ର ପ୍ରଥମୋକ୍ତ ବ୍ୟାପାରଟିକୁ କାର୍ଯ୍ୟକାରୀ କରାଯିବା ଦିଗରେ ଅର୍ଥାଭାବର ବାହାନାରେ ଉଦାସୀନ ନୀତି ଅବଲମ୍ବନ କରାଯାଉଛି । ଦିଲ୍ଲୀର ମୋଟ ବାୟୁ ପ୍ରଦୂଷଣର ଶତକଡ଼ା ୬୪ ଭାଗ କେବଳ ବିଭିନ୍ନ ପ୍ରକାର ପେଟ୍ରୋଲ ଓ ଡିଜେଲ ଇଞ୍ଜିନ୍ ଦ୍ୱାରା ଚାଳିତ ଯାନଗୁଡ଼ିକ ଯୋଗୁଁ ଘଟୁଥିଲେ ମଧ ଦିନକୁ ଦିନ ଏହି ଯାନଗୁଡ଼ିକର ସଂଖ୍ୟା ଆବର୍ଦ୍ଧିତ ହେଉଛି । ସ୍ୱଳ୍ପକାଳୀନ ବା ଦୀର୍ଘକାଳୀନ ସୂତ୍ରରେ ଏପରି କ୍ରିୟାଶୀଳତା ବିରୋଧରେ ଫଳପ୍ରଦ ନିୟନ୍ତ୍ରଣ ଜାରି କରିବା ଦିଗରେ ସରକାର ଅପାରଗ ହୋଇଥିବା ସ୍ଥଳେ ନ୍ୟସ୍ତସ୍ୱାର୍ଥ ଉପଭୋଗୀ

ଗୋଷ୍ଠୀର ବାସିନ୍ଦାମାନେ ଓଲଟି ସ୍ଥିତାବସ୍ଥାକୁ ବଜାୟ ରଖିବାକୁ ସ୍ପୃହଣୀୟ ମଣୁଛନ୍ତି । ଦରିଦ୍ର ଓ ଧନୀ ନିର୍ବିଶେଷରେ ସମସ୍ତେ ବାୟୁ ପ୍ରଦୂଷଣ ଯୋଗୁଁ ଦୁର୍ବିସହ ଓ ବିପର୍ଯ୍ୟସ୍ତ ଜୀବନ ବିତାଉଥିଲେ ମଧ୍ୟ ଏହାର ପ୍ରତିକାର ଦିଗରେ ଆଶାନୁରୂପ ଜନମତର ସର୍ଜନା ଅଦ୍ୟାବଧି ସମ୍ଭବ ହୋଇନାହିଁ ।

ଜଳ ପ୍ରଦୂଷଣର ବିଭୀଷିକା ସମ୍ପର୍କରେ ଏହି ରିପୋର୍ଟଟିରେ ଅତୀବ ଭୟାନକ ଚିତ୍ର ପ୍ରଦତ୍ତ ହୋଇଛି । ଏଥିରେ ମୁଖ୍ୟତଃ ନଦୀ ଜଳର ପ୍ରଦୂଷଣ ପ୍ରତି ବିଶେଷ ପ୍ରାଧାନ୍ୟ ଆରୋପିତ ହୋଇଛି । ସବୁଜ ବିପ୍ଳବ କାର୍ଯ୍ୟକାରୀ ହେଉଥିବା ଶସ୍ୟକ୍ଷେତ୍ରଗୁଡ଼ିକ ବାଟେ ତଥା ଯେ କୌଣସି ସହରାଞ୍ଚଳ ବାଟେ ପ୍ରବାହିତ ଜଳ ସ୍ରୋତର ରୂପ ଗୋଟିଏ ବିଷାକ୍ତ ନର୍ଦ୍ଦମା ଭଳି ହୋଇଛି । କୃତ୍ରିମ ରାସାୟନିକ ସାର ଓ ବହୁବିଧ କୀଟନାଶକ ଦ୍ରବ୍ୟ ପ୍ରୟୋଗ କରାଯାଇଥିବା ଜମିମାନଙ୍କରୁ ନିଷ୍କାସିତ ଜଳ ପାରିପାର୍ଶ୍ୱିକ ଜଳଭଣ୍ଡାରଗୁଡ଼ିକୁ ପ୍ରଦୂଷିତ କରୁଛି । ନଗରାଞ୍ଚଳ ଓ ଶିଳ୍ପାଞ୍ଚଳମାନଙ୍କରେ କାରଖାନା ଓ ବାସଗୃହମାନଙ୍କରୁ ନିଃସୃତ ବହୁବିଧ ବିଷାକ୍ତ ଆବର୍ଜନା ଓ ଡିଟର୍ଜେଣ୍ଟ ପାରିପାର୍ଶ୍ୱିକ ଜଳ ଭଣ୍ଡାରଗୁଡ଼ିକୁ ପ୍ରଦୂଷିତ କରୁଛି । ସହରାଞ୍ଚଳମାଙ୍କରେ ସ୍ୱିଓ୍ୱେଜ୍ ବ୍ୟବସ୍ଥାଗୁଡ଼ିକୁ ଠିକଣା ଭାବରେ କାର୍ଯ୍ୟକାରୀ କରିବା ପାଇଁ କେନ୍ଦ୍ର ସରକାରଙ୍କ ପାଖରେ ପଇସା ନାହିଁ । ପୁଣି ଯେଉଁ ସହରାଞ୍ଚଳ ଓ ଶିଳ୍ପାଞ୍ଚଳମାନଙ୍କରେ କୌଣସି ପ୍ରକାର ସ୍ୱିଓ୍ୱେଜ୍ ବ୍ୟବସ୍ଥା ପ୍ରତିଷ୍ଠିତ ହୋଇଛି, ସେଠାରେ ମଧ୍ୟ ତାହାର ରକ୍ଷଣାବେକ୍ଷଣ ପାଇଁ ଅର୍ଥାଭାବ ଘଟୁଛି ଏବଂ ପ୍ରଶାସନିକ ଅପାରଗତା ହିଁ ଏପରି ବ୍ୟାପାରଗୁଡ଼ିକୁ ଆହୁରି ଦୁର୍ଗତିର ସମ୍ମୁଖୀନ କରାଇଛି । ରାଜ୍ୟ ସରକାର ଓ ମ୍ୟୁନିସିପାଲିଟି କର୍ତ୍ତୃପକ୍ଷ ସ୍ୱିଓ୍ୱେଜ୍ ବ୍ୟବସ୍ଥାଗୁଡ଼ିକୁ ପ୍ରତିଷ୍ଠା କରିବା ଦିଗରେ କିମ୍ବା ସେଗୁଡ଼ିକର ରକ୍ଷଣାବେକ୍ଷଣ କରିବା ଦିଗରେ ଅର୍ଥାଭାବ ଯୋଗୁଁ ଠିକଣା ପଦକ୍ଷେପଗୁଡ଼ିକୁ କାର୍ଯ୍ୟକାରୀ କରାଇବାକୁ ସମର୍ଥ ହେଉନାହାନ୍ତି । ମାତ୍ର ହାର୍ଡ୍‌ୱେୟାର୍ ବାବଦ ଯୋଜନାଗୁଡ଼ିକୁ କାର୍ଯ୍ୟକାରୀ କରାଇବା ବ୍ୟାପାରରେ ଉଭୟ ସରକାରୀ ଓ ମ୍ୟୁନିସିପାଲିଟି କର୍ତ୍ତୃପକ୍ଷ ବିଶେଷ ଆଗ୍ରହୀ ହେଉଛନ୍ତି । ନାଳ ନର୍ଦ୍ଦମା ଖୋଳିବା, ପାଇପ୍ ବିଛାଇବା ଓ ପମ୍ପ ପ୍ରତିଷ୍ଠା କରାଇବା ବ୍ୟାପାରଗୁଡ଼ିକୁ ପରିଚାଳନା କରିବା ଅବସରରେ ଉଭୟ ଅମଲାତନ୍ତ୍ର ଓ ଠିକାଦାରମାନଙ୍କ ହାତ ଚିକ୍କଣ ହେଉଛି । ସରକାରୀ ଓ ମ୍ୟୁନିସିପାଲଟି ରାଜସ୍ୱକୁ ଲୁଟି ନେବା ବ୍ୟାପାରରେ ଏମାନେ ବିଚକ୍ଷଣ ପାରଦର୍ଶିତା ପ୍ରଦର୍ଶନ କରୁଛନ୍ତି । ଯାହା କିଛି ଅର୍ଥ ଏପରି ଭାବରେ ଅବସ୍ଥାପନା ସୃଷ୍ଟି କରିବା ପାଇଁ ବା ମରାମତି ପାଇଁ ବ୍ୟୟ କରାଯାଉଛି, ତାହାର ବିନିମୟରେ ଆଶାନୁରୂପ ଫଳ ମିଳୁନାହିଁ । ଛ'ମାସ ବା ବର୍ଷେ ପରେ ପରିସ୍ଥିତି ଆହୁରି ଶୋଚନୀୟ ରୂପ ଧାରଣ କରୁଛି ।

ଆମ ଦେଶର ନଦୀଗୁଡ଼ିକରେ ପ୍ରଦୂଷଣର ତୀବ୍ରତାରେ ହ୍ରାସ ଘଟାଇବା ପାଇଁ ସୁଚିନ୍ତିତ ଯୋଜନାଗୁଡ଼ିକୁ ପ୍ରଣୟନ କରାଯାଇଛି । ଗଙ୍ଗା, ଯମୁନା, ମହାନଦୀ ଭଳି ଦେଶର ସୁବୃହତ୍ ନଦୀଗୁଡ଼ିକୁ ପ୍ରଦୂଷଣର ତୀବ୍ରତାରୁ ରକ୍ଷା କରିବା ପାଇଁ ଯେଉଁ ନୀତିଗତ ନିଷ୍ପତ୍ତି ଗ୍ରହଣ କରାଯାଉଛି, ତାହା ବେଶ୍ ସ୍ୱାଗତଯୋଗ୍ୟ ହୋଇଛି । ମାତ୍ର କାର୍ଯ୍ୟ କ୍ଷେତ୍ରରେ ବ୍ୟୟ ତୁଳନାରେ ବିଶେଷ କିଛି ଲାଭ ମିଳୁନାହିଁ । ସର୍ବ ପ୍ରଥମେ ନଦୀ ଜଳର ବିଶୋଧନ ପାଇଁ ଗଙ୍ଗା ଆକ୍ସନ୍ ପ୍ଲାନଟିକୁ ୧୩ ବର୍ଷ ପୂର୍ବେ କାର୍ଯ୍ୟକାରୀ କରାଗଲା । ୧୩ ବର୍ଷ ପୂର୍ବର ଗଙ୍ଗା ନଦୀର ଜଳ ଏବଂ ଆଜିକାର ଗଙ୍ଗା ନଦୀର ଜଳ ମଧ୍ୟରେ ଗୁଣାତ୍ମକ ଦୃଷ୍ଟିରୁ କୌଣସି ପାର୍ଥକ୍ୟ ପରିଲକ୍ଷିତ ହେଉନାହିଁ । ମାତ୍ର ଇତ୍ୟବସରରେ କେନ୍ଦ୍ର ସରକାରଙ୍କ ରାଜକୋଷରୁ ଗଙ୍ଗା ନଦୀର ଜଳ ବିଶୋଧନ ବ୍ୟାପାରରେ ୪୬୨.୦୨ କୋଟି ଟଙ୍କା ଉଠାଯାଇଛି । ଅପରିଷ୍କାର ଜଳର ବିଶୋଧନ ବାବଦ ଏହି ଅର୍ଥର ବିପୁଳାଂଶ ତତ୍‌ସଂପୃକ୍ତ କର୍ମକର୍ତ୍ତା ଓ ବ୍ୟବସାୟୀମାନଙ୍କ ପକେଟ୍‌କୁ ହିଁ ଚାଲିଯାଉଛି । ପୁଣ୍ୟତୋୟା ଗଙ୍ଗା ନଦୀର ଜଳ ବିଶୋଧନ ଏକ ଆୟାସସାଧ୍ୟ ବ୍ୟାପାର । ଏଥିପାଇଁ ଯେଉଁ ଉଚ୍ଚାଭିଳାଷୀ ଯୋଜନାଟିକୁ ପ୍ରସ୍ତୁତ କରାଯାଇଥିଲା ସେଥିରେ କୌଣସି ତ୍ରୁଟି ନାହିଁ । ଏହି ଯୋଜନାଟିକୁ କାର୍ଯ୍ୟକରୀ କରାଯିବା ଦ୍ୱାରା ଆଶା କରାଯାଉଥିଲା ଯେ ହିମାଳୟ ପର୍ବତମାଳାସ୍ଥିତ ଏହାର ଉତ୍ସଠାରୁ ବଙ୍ଗୋପସାଗର ପର୍ଯ୍ୟନ୍ତ ବିସ୍ତୃତ ଏହି ନଦୀର ୨୫୨୫ କିଲୋମିଟର ଜଳପଥକୁ ତତ୍‌ସମୀପବର୍ତ୍ତୀ ବାସିନ୍ଦାମାନ ସ୍ନାନ ଓ ବ୍ୟବହାର ପାଇଁ ବିପଦମୁକ୍ତ କରାଯିବ । ମାତ୍ର ଅଳ୍ପ କେତୋଟି ସହର ସମୀପବର୍ତ୍ତୀ ଗଙ୍ଗା ନଦୀର ଧାରକୁ ବାଦ୍ ଦେଲେ ଅନ୍ୟ କୌଣସି ଅଞ୍ଚଳରେ ଏହାର ଜଳର ଗୁଣାତ୍ମକ ମାନକୁ ଆବର୍ଦ୍ଧିତ କରାଯିବା ସମ୍ଭବ ହୋଇନାହିଁ ।

ପ୍ରଥମ ପର୍ଯ୍ୟାୟରେ (Phase-I) ୨୫ଟି ବୃହତ୍ ନଗରୀରୁ ଗଙ୍ଗାନଦୀକୁ ନିଷ୍କାସିତ ହେଉଥିବା ଦୂଷିତ ଜଳକୁ ସ୍ୱିଓ୍ୱେଜ ବ୍ୟବସ୍ଥା ଅବଲମ୍ବନରେ ବିଶୋଧନ କରାଯିବା ପାଇଁ ୪୬୨.୦୨ କୋଟି ଟଙ୍କା ମଞ୍ଜୁର କରାଗଲା । ଏତଦ୍ୱାରା ସ୍ୱିଓ୍ୱେଜ୍ ବ୍ୟବସ୍ଥା ଦ୍ୱାରା ବିଶୋଧିତ ହୋଇ ପାରୁନଥିବା ୮୭୩ mld ପରିମିତ ଜଳକୁ ମଧ୍ୟ ବିଶୋଧନକାରୀ ପ୍ରତିଷ୍ଠାନ ପର୍ଯ୍ୟନ୍ତ ପଠାଇବାର ନିଷ୍ପତ୍ତି ଗୃହୀତ ହୋଇଥିଲା । ଏହି ପ୍ରଥମ ପର୍ଯ୍ୟାୟର କାର୍ଯ୍ୟ ନିର୍ଘଣ୍ଟକୁ ୬ ବର୍ଷ ମଧ୍ୟରେ ଶେଷ କରିବାକୁ ନି କରାଗଲା । ମାତ୍ର ଏଥିପାଇଁ ନିର୍ଦ୍ଧାରିତ ସମୟର ପ୍ରାୟ ଦୁଇ ଗୁଣ ସମୟ ଅତିବାହିତ ହେବା ପରେ ଏହାକୁ ୧୯୯୭ ମସିହାର ମାର୍ଚ୍ଚ ମାସ ସୁଦ୍ଧା ଯେ କୌଣସି ମତେ ଶେଷ କରିବା ପାଇଁ ସଂପୃକ୍ତ କର୍ତ୍ତୃପକ୍ଷଙ୍କୁ ନିର୍ଦ୍ଦେଶ ଦିଆଗଲା ।

ହରିଦ୍ୱାର, କନୌଜ, କାନପୁର, ଆଲ୍ଲାହାବାଦ ଓ ବାରାଣସୀ ତଟବର୍ତ୍ତୀ ଗଙ୍ଗା ନଦୀର ଜଳକୁ ରାସାୟନିକ ବିଶ୍ଳେଷଣ କରାଯିବା ଦ୍ୱାରା ଜଣା ପଡୁଛି ଯେ ଏଥିରେ ଥିବା ଅନିଷ୍ଟକାରୀ ବ୍ୟାକ୍‌ଟେରିଆମାନଙ୍କ ପରିମାଣ ନିରାପଦ ସୀମାଠାରୁ ଯଥେଷ୍ଟ ଅଧିକ ହୋଇଛି । ପବିତ୍ର ଗଙ୍ଗାନଦୀରେ ବୁଡ ପକାଇବା ଦ୍ୱାରା ଧର୍ମପରାୟଣ ବ୍ୟକ୍ତିମାନେ ଦୂଷିତ ଜଳ ଦ୍ୱାରା ସଂକ୍ରମିତ ବହୁବିଧ ବ୍ୟାଧି ଦ୍ୱାରା ଆକ୍ରାନ୍ତ ହେଉଛନ୍ତି । ୧୯୯୬ ମସିହାରେ ପ୍ରକାଶିତ ଏକ ସରକାରୀ ରିପୋର୍ଟରୁ ଜଣାପଡୁଛି ଯେ, କାନପୁର, କନୌଜ ଓ ଆଲ୍ଲାହାବାଦ ତଟବର୍ତ୍ତୀ ଗଙ୍ଗା ନଦୀର ଜଳର ଜୈବିକ ଅମ୍ଳଜାନ ଚାହିଦା ବା Biological Oxygen Demand (BOD)ର ପରିମାଣ ନିରାପଦ-ସୀମାଠାରୁ ଅଧିକ ହେଉଛି । ଏହାର ପରିମାଣ ଲିଟର ପ୍ରତି ତିନି ମିଲିଗ୍ରାମରୁ କମ୍ ହେବାର କଥା । ମାତ୍ର ପ୍ରାମାଣିକ ତଥ୍ୟରାଜିରୁ ଜଣାପଡୁଛି ଯେ BODର ପରିମାଣ ଏହି ସୀମାଠାରୁ ଅଧିକ ହୋଇଛି । ଜଳର ବିଶୁଦ୍ଧତାର ଆନୁପାତିକ ପରିମାଣ ମାପିବାର ଅନ୍ୟତମ ଉପାୟ ହେଉଛି ସେଥିରେ ଅନିଷ୍ଟକାରୀ କୋଲିଫର୍ମ ଗୁଡ଼ିକର ପରିମାଣ ନିର୍ଦ୍ଧାରଣ କରିବା । ଏ ପ୍ରକାର କୋଲିଫର୍ମ କାଉଣ୍ଟ ପାଇଁ କେନ୍ଦ୍ରୀୟ ପ୍ରଦୂଷଣ ନିୟନ୍ତ୍ରଣ ବୋର୍ଡ଼ (CPCB) ଯତ୍ନବାନ ହୋଇଥିଲେ । ସେମାନଙ୍କ ସର୍ବେକ୍ଷଣରୁ ମଧ୍ୟ ଜଣା ପଡୁଛି ଯେ କୋଲିଫର୍ମ କାଉଣ୍ଟର ପରିମାଣ ନିରାପଦ-ସୀମାଠାରୁ ଅଧିକ ହୋଇଛି ।

ଉତ୍ତର ପ୍ରଦେଶର ପ୍ରଦୂଷଣ ନିୟନ୍ତ୍ରଣ ବୋର୍ଡ଼ ଏବେ ଘୋଷଣା କରିଛନ୍ତି ଯେ କେତେକ ସୁପ୍ରସିଦ୍ଧ ତୀର୍ଥସ୍ଥାନ ସମେତ ଗଙ୍ଗାନଦୀର ଜଳକୁ କୌଣସିଠାରେ ଶୁଦ୍ଧ ପାନୀୟ ଜଳ ଭାବରେ ବ୍ୟବହାର କରିହେବ ନାହିଁ । ଦ୍ୱିତୀୟ ପର୍ଯ୍ୟାୟର (Phase-II) କାର୍ଯ୍ୟ ଆରମ୍ଭ କରାଯିବା ପୂର୍ବରୁ ଏବଂବିଧ ସୂଚନା ଏପରି ଯୋଜନାଗୁଡ଼ିକର ସଫଳତା ସମ୍ପର୍କରେ ଜନମାନସରେ ସନ୍ଦେହ ସୃଷ୍ଟି କରିବା ବେଶ୍ ସ୍ୱାଭାବିକ ବୋଧ ହେଉଛି ।

ଆମ ଦେଶର ବୃହତ୍ ନଗରୀମାନଙ୍କରେ ପ୍ରଦୂଷଣର ତୀବ୍ରତା ସେଠାକାର ଜନସାଧାରଣଙ୍କ ଦେହସୁହା ହୋଇଗଲାଣି । ସମ୍ବାଦପତ୍ରମାନଙ୍କରେ ନିତ୍ୟ ନୈମିତ୍ତିକ ଭାବରେ ପ୍ରକାଶିତ ବିଘଟଣଗୁଡ଼ିକ ଜନସାଧାରଣଙ୍କୁ ବିଶେଷ ଭାବରେ ଆଲୋଡ଼ିତ କରୁନାହିଁ । ଏହି ରିପୋର୍ଟରେ ବୃହତ୍ ନଗରୀଗୁଡ଼ିକ ବ୍ୟତିରେକେ ଆମ ଦେଶର ଛୋଟ ଛୋଟ ସହରମାନଙ୍କରେ ପ୍ରଦୂଷଣର ତୀବ୍ରତା ସମ୍ପର୍କରେ ଜ୍ଞାତବ୍ୟ ତଥ୍ୟରାଜି ପ୍ରଦତ୍ତ ହୋଇଛି । ଲୁଧିଆନା, ତେଜପୁର, ତିରୁପୁର ଓ ରାଉରକେଲା ପ୍ରଭୃତି ଶିଳ୍ପାଶ୍ରୟୀ ସହରଗୁଡ଼ିକରେ ପରିବେଶୀୟ ପ୍ରଦୂଷଣ ଅତି ବିଷାକ୍ତ ରୂପ ଧାରଣ କରିଛି । ଏଠାକାର ବାସିନ୍ଦାମାନଙ୍କ ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ହୋଇଥିଲେ

ମଧ୍ୟ ସେମାନେ ଗୋଟିଏ ଗୋଟିଏ ବିଷାକ୍ତ ତମ୍ବୁ ଭିତରେ ହିଁ ବସବାସ କରୁଛନ୍ତି । ଉପଯୁକ୍ତ ଯୋଜନା ଓ ପ୍ରଶାସନିକ କାର୍ଯ୍ୟଦକ୍ଷତାର ଅଭାବ ଯୋଗୁଁ କଳ କାରଖାନା ପ୍ରତିଷ୍ଠିତ ହୋଇ ନଥିବା ସହରଗୁଡ଼ିକର ପରିବେଶୀୟ ସମସ୍ୟା ମଧ୍ୟ ଅତି ଉତ୍କଟ ହୋଇଛି । ଆଲିଗଡ଼ ଓ ଭାଗଲପୁର ଆଦି ସହରଗୁଡ଼ିକର ବାସିନ୍ଦାମାନେ ସହରାଞ୍ଚଳରେ ସ୍ତୂପୀକୃତ ବିଷାକ୍ତ ଆବର୍ଜନା ଯୋଗୁଁ ଦୁର୍ବିସହ ଜୀବନ ବିତାଉଛନ୍ତି । ଜଇସାଲମେର ଗୋଟିଏ ଛୋଟ ସହର । ଅନେକ ପରିବ୍ରାଜକ ଏଠାକୁ ଆସୁଛନ୍ତି ଏଠାକାର ଐତିହାସିକ ଦୁର୍ଗ ଦେଖିବା ପାଇଁ । ମାତ୍ର ଏଠାରେ ଭୂଗର୍ଭୀୟ ଜଳ ଭଣ୍ଡାରମାନଙ୍କରେ ଜଳର ଆତିଶଯ୍ୟ ଏତେ ଅଧିକ ଯେ ଦୁର୍ଗର କାନ୍ଥଭିତରକୁ ମଧ୍ୟ ଜଳ ପଶିଆସୁଛି ଏବଂ ସେଥିରେ ଫାଟ ସୃଷ୍ଟି କରୁଛି । ଏପରି ସମସ୍ୟାର ପ୍ରତିକାର ଦିଗରେ ସରକାର କୌଣସି ଆଶୁ ପ୍ରତିକାରମୂଳକ ପଦକ୍ଷେପ ଗ୍ରହଣ କରୁଥିବା ଭଳି ଜଣା ପଡୁନାହିଁ । ପୃଥିବୀର ଅନ୍ୟତମ ପ୍ରମୁଖ ପ୍ରଦୂଷିତ ଦିଲ୍ଲୀ ନଗରୀର ବାସିନ୍ଦାମାନେ ପିଆଜର ଦରବୃଦ୍ଧି ନେଇ ଯେତେ ଚିନ୍ତିତ ହୋଇଥିଲେ ଏବଂ ବିଗତ ସାଧାରଣ ନିର୍ବାଚନରେ ଏହି ସମସ୍ୟାକୁ କେନ୍ଦ୍ର କରି ଯେପରି ହଇଚଇ ସୃଷ୍ଟି ହୋଇଥିଲା, ସେଠାକାର ବାୟୁ ପ୍ରଦୂଷଣର ତୀବ୍ରତା ତା' ତୁଳନାରେ ରାଜନୈତିକ ନେତୃବର୍ଗଙ୍କ ଦୃଷ୍ଟି ଆକର୍ଷଣ କରାଇବାରେ କୌଣସି ପ୍ରମୁଖ ଲକ୍ଷ୍ୟଣୀୟ ଭୂମିକା ଗ୍ରହଣ କରିବାକୁ ଅସମର୍ଥ ହେଲା । ଜନସାଧାରଣ ନିତ୍ୟ ନୈମିତ୍ତିକ ଜୀବନରେ ଭୋଗୁଥିବା ଦୁର୍ଦ୍ଦଶା ପରିପ୍ରେକ୍ଷୀରେ ତଥା ଭବିଷ୍ୟତର ଉତ୍କଟତର ପରିବେଶୀୟ ସମସ୍ୟାରାଜିର ଉତ୍ପୀଡ଼ନ ପରିପ୍ରେକ୍ଷୀରେ ଉପଯୁକ୍ତ ଜନମତ ବଳରେ ରାଜନୈତିକ କ୍ରିୟାଶୀଳତାର କର୍ମାଭିମୁଖ୍ୟରେ କୌଣସି ପ୍ରକାର ଶୁଭକାରୀ ପରିବର୍ତ୍ତନ ଘଟାଇବାକୁ ଅସମର୍ଥ ହେଲେ ।

ଦୃଢ଼ ଜନମତର ଚାପରେ ସରକାରୀ ଶାସନକଳକୁ ପ୍ରଭାବିତ କରିବା ଦିଗରେ ଜନସାଧାରଣ ଅସମର୍ଥ ହୋଇଥିଲେ ମଧ୍ୟ ସମକାଳୀନ ଭାବରେ ଲକ୍ଷ୍ୟ କରାଯାଉଛି ଯେ ଗୋଟିଏ ଅଞ୍ଚଳର ବାସିନ୍ଦାମାନେ ପରିବେଶର ପ୍ରଦୂଷଣ ପାଇଁ ଆଉ ଏକ ଅଞ୍ଚଳର ବାସିନ୍ଦାମାନଙ୍କ ପ୍ରତି ଦୋଷାରୋପ କରିବା ବ୍ୟାପାରରେ ବେଶ୍ ସଚେତନ ହୋଇଛନ୍ତି । ଉଦାହରଣ ସ୍ୱରୂପ, ତେଜପୁର ସହରର ତଳ ମୁଣ୍ଡରେ ଅବସ୍ଥାପିତ ଧୋରାଜିର ବାସିନ୍ଦାମାନେ ଏବଂ ତିରୁପୁର ସହରର ତଳ ମୁଣ୍ଡରେ ଥିବା ଚାଷୀମାନେ ଏଠାକାର ଶିଳ୍ପାନୁଷ୍ଠାନଗୁଡ଼ିକରୁ ନିଃସୃତ ବିଷାକ୍ତ ଆବର୍ଜନାଗୁଡ଼ିକ ଯୋଗୁଁ ନିଜ ନିଜ ଅଞ୍ଚଳ ବିଶେଷ ପ୍ରଦୂଷିତ ହେଉଥିବାର ନଜିର ଦେଖାଇ ନ୍ୟାୟାଳୟର ଆଶ୍ରୟ ନେଇଥିଲେ । ସଂପୃକ୍ତ ନ୍ୟାୟାଧୀଶମାନେ ପ୍ରଦୂଷଣ ବିରୋଧରେ ଯଥାବିଧି ପ୍ରତିଷେଧକ ବ୍ୟବସ୍ଥା ନିର୍ଦ୍ଧାରିତ ସମୟ-ସୀମା

ମଧ୍ୟରେ କାର୍ଯ୍ୟକାରୀ କରାନଗଲେ ପ୍ରଦୂଷଣକାରୀ ପ୍ରତିଷ୍ଠାନଗୁଡ଼ିକୁ ବନ୍ଦ କରିଦେବାର ଧମକ ଦେଲେ । ସେମାନଙ୍କ ନିଷ୍ପତ୍ତିକୁ ଅବମାନନା କରା ନଗଲେ ମଧ୍ୟ ତଦାଶ୍ରୟୀ କର୍ମପନ୍ଥାଗୁଡ଼ିକୁ ଆନ୍ତରିକତାର ସହିତ କାର୍ଯ୍ୟକାରୀ କରାଯାଉନଥିବାରୁ ସ୍ଥିତାବସ୍ଥାରେ ବିଶେଷ ଲକ୍ଷ୍ୟଣୀୟ ପରିବର୍ତ୍ତନ ଘଟୁନାହିଁ । ତଥାପି ଜନସାଧାରଣ ପ୍ରଶାସନିକ ବ୍ୟବସ୍ଥା ଦ୍ୱାରା ପ୍ରତାରିତ ହେବା ପୂର୍ବକ ଅମଲାତନ୍ତ୍ରଠାରୁ ଆସ୍ଥା ତୁଟାଇ ଦେବା ପରେ ବିଚାରାଳୟଗୁଡ଼ିକ ଉପରେ ହିଁ ଭରସା ରଖିଛନ୍ତି ଏବଂ ଆଶା କରୁଛନ୍ତି ଯେ ସେମାନଙ୍କ ସାମୟିକ ଚେତାବନୀ ଯୋଗୁଁ ପରିସ୍ଥିତି ଆତଙ୍କପ୍ରଦ ରୂପ ଧାରଣ କରିବ ନାହିଁ ।

ପାଶ୍ଚାତ୍ୟ ରାଷ୍ଟ୍ରମାନଙ୍କରେ ପୁନରଭ୍ୟୁଦୟ କାଳଠାରୁ ଶିଳ୍ପାୟନ ପ୍ରତି ଅଗ୍ରାଧିକାର ଆରୋପ କରାଯିବାର ଆଦ୍ୟ ପର୍ବରେ ସେହି ଦେଶମାନଙ୍କରେ ପରିବେଶୀୟ ଓ ସାମାଜିକ କ୍ଷେତ୍ରରେ ଯେଉଁ ପରିସ୍ଥିତି ସୃଷ୍ଟି ହୋଇଥିଲା, ସ୍ୱାଧୀନତା-ଉତ୍ତର ବିକାଶଶୀଳ ରାଷ୍ଟ୍ରମାନଙ୍କରେ ଠିକ୍ ତଦନୁରୂପ ପରିସ୍ଥିତି ପରିଲକ୍ଷିତ ହେଉଛି । ପାରିପାର୍ଶ୍ୱିକ ପରିବେଶ ବିଷାକ୍ତ ଆବର୍ଜନା ଦ୍ୱାରା ପ୍ରଦୂଷିତ ହେବା ଯୋଗୁଁ, ଶ୍ରମିକମାନଙ୍କୁ ଶିଳ୍ପାଞ୍ଚଳମାନଙ୍କରେ ପ୍ରତିଷ୍ଠିତ ଦୂଷିତ ପରିବେଶରେ ସ୍ଲମ୍‌ମାନଙ୍କରେ ରହିବା ପାଇଁ ବାଧ୍ୟ କରାଯିବା ଯୋଗୁଁ ତଥା ଶିଶୁ-ଶ୍ରମିକମାନଙ୍କୁ ଉତ୍ପାଦନ-ବ୍ୟାପାରରେ ନିଯୁକ୍ତ କରାଯିବା ଯୋଗୁଁ ସେହି ଦେଶମାନଙ୍କରେ ତତ୍କାଳୀନ ସାମାଜିକ ଓ ଅର୍ଥନୈତିକ ପରିବେଶ ଯେପରି ମାନବିକତାବୋଧ ବର୍ଜିତ ଶୋଚନୀୟ ରୂପ ଧାରଣ କରିଥିଲା, ଆମ ଦେଶ ସମେତ ଇତର ବିକାଶଶୀଳ ରାଷ୍ଟ୍ରଗୁଡ଼ିକରେ ଏବେ ସେହି ପ୍ରକାର ବିଲକ୍ଷଣଗୁଡ଼ିକ ପ୍ରତିଭାତ ହେଉଛି । ଅପରିଣାମଦର୍ଶୀ, ସ୍ୱାର୍ଥାନ୍ୱେଷୀ, ଶୋଷଣପ୍ରବଣ ଓ ଲାଭଖୋର ମନୋବୃତ୍ତି ବଳରେ ପାଶ୍ଚାତ୍ୟ ରାଷ୍ଟ୍ରଗୁଡ଼ିକ ଶିଳ୍ପାୟନର ଆଦ୍ୟ ପର୍ବରେ ବିଭିନ୍ନ କାର୍ଯ୍ୟକ୍ରମଗୁଡ଼ିକୁ କାର୍ଯ୍ୟକାରୀ କରାଇଥିବାରୁ ଏବେ ସେହି ଦେଶମାନଙ୍କରେ ପରିବେଶୀୟ ପ୍ରଦୂଷଣ ଚରମ ସୀମା ସ୍ପର୍ଶ କରିଛି ଏବଂ ସ୍ଥିତାବସ୍ଥାର ତାଡ଼ନାରେ ସେଠାକାର ସରକାର ଓ ପରିବେଶ-ସଚେତନ ଜନସାଧାରଣ ଏବେ ପ୍ରତିକାରମୂଳକ ବ୍ୟବସ୍ଥାଗୁଡ଼ିକୁ ବିଧିବଦ୍ଧ ଭାବରେ କାର୍ଯ୍ୟକାରୀ କରାଉଛନ୍ତି । ଏଥିପାଇଁ ଅତ୍ୟାଧୁନିକ ବିଜ୍ଞାନସମ୍ମତ ପନ୍ଥାଗୁଡ଼ିକୁ ଦୃଢ଼ ଆଇନ୍‌ସମ୍ମତ କଟକଣା ବଳରେ ସେହି ଦେଶମାନଙ୍କରେ କାର୍ଯ୍ୟକାରୀ କରାଯାଉଛି । ମାତ୍ର ବିକାଶଶୀଳ ରାଷ୍ଟ୍ରଗୁଡ଼ିକ ସେମାନଙ୍କ ବିଗତ ୨୦୦ ବର୍ଷର ଅଭିଜ୍ଞତାରୁ କୌଣସି ଶିକ୍ଷଣୀୟ ଉପାଦାନ ସଂଗ୍ରହ କରିଥିବା ଭଳି ଜଣାପଡୁନାହିଁ । ସେମାନେ ଶିଳ୍ପାୟନର ପ୍ରାରମ୍ଭ କାଳରେ ଯେଉଁ ପ୍ରକାର ପନ୍ଥାଗୁଡ଼ିକର ଅନୁଗାମୀ ହୋଇଥିଲେ ଏମାନେ ପ୍ରାୟତଃ ତାହାକୁ ପ୍ରଗତିଶୀଳତାର

ଅବଲମ୍ବନ ଭାବରେ ଗ୍ରହଣ କରିବା ପୂର୍ବକ ଅନ୍ଧ ଭାବରେ ଅନୁସରଣ କରିବାକୁ ହିଁ ଶ୍ରେୟସ୍କର ମଣୁଛନ୍ତି । ଇତ୍ୟବସରରେ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ସମୃଦ୍ଧି ସାଧନ ବଳରେ ମନୁଷ୍ୟର ଚେତନାରେ କ୍ରାନ୍ତିକ ଉତ୍ତରଣ ଘଟିଛି । ଯେଉଁ ଏକଦିଶୀ ଲଘୁକରଣ (Reductionism) ପ୍ରକ୍ରିୟା ଅବଲମ୍ବନରେ ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟାର ସମୃଦ୍ଧି ସାଧନ କରାଯିବା ସଙ୍ଗେ ସଙ୍ଗେ ପ୍ରକୃତିକୁ ଲୁଣ୍ଠନ କରାଯିବାର ପ୍ରଥା ବଳବତ୍ତର ରହିଥିଲା, ଆଧୁନିକ ବିଜ୍ଞାନ ତାହାର ବିରୋଧାଚରଣ କରୁଛି । ଅଂଶବିଶେଷଗୁଡ଼ିକର ଧର୍ମ ଓ ବ୍ୟବହାର ସମ୍ପର୍କରେ ସୀମିତ ଜ୍ଞାନାର୍ଜନ କରିବା ଦ୍ୱାରା ଗୋଟିଏ ସଂସ୍ଥିତିର ସାମଗ୍ରିକ ରୂପ ସମ୍ପର୍କରେ ନିର୍ଭୁଲ ଧାରଣା ପୋଷଣ କରିବା ସମ୍ଭବ ହୋଇ ନ ପାରିବାର ଉପଲବ୍‌ଧି ହିଁ ମନୁଷ୍ୟକୁ ସାମଗ୍ରିକ ଦୃଷ୍ଟିଭଙ୍ଗୀରେ (Holistic outlook) ତାତ୍ପର୍ଯ୍ୟ ସମ୍ପର୍କରେ ସଚେତନ କରାଇଛି । ସାମଗ୍ରିକତାର ରୂପ ସଂପର୍କରେ ଧାରଣା ପୋଷଣ କରିବା ଦ୍ୱାରା ହିଁ ମନୁଷ୍ୟ ପ୍ରକୃତିର ଅଂଶବିଶେଷଗୁଡ଼ିକର ଠିକଣା ଯତ୍ନ ନେଇ ପାରିବା ଦିଗରେ ଓ ସେଗୁଡ଼ିକର ସୁସଂଯତ ବ୍ୟବହାର କରିବା ଦିଗରେ ପାରଙ୍ଗମତା ହାସଲ କରିବାର ଚେତନା ଜନମାନସରେ ଅଙ୍କୁରିତ ହୋଇଛି । ଆଧୁନିକ କ୍ୱାଣ୍ଟମ୍ ତତ୍ତ୍ୱ ଓ ଆପେକ୍ଷିକ ତତ୍ତ୍ୱାଶ୍ରୟୀ ଗବେଷଣାର ସମୃଦ୍ଧି ସାଧନ କରାଯିବା ଦ୍ୱାରା ମନୁଷ୍ୟର ଚେତନାରେ ଏ ପ୍ରକାର ଯେଉଁ କ୍ରାନ୍ତିକ ଉତ୍ତରଣ ଘଟିଛି ତାହା ଅବଶ୍ୟ ସାଧାରଣ ଜ୍ଞାନ ସ୍ତରରେ ଜନମାନସକୁ ବିଶେଷ ଭାବରେ ପ୍ରଭାବିତ କରି ନାହିଁ । ଏଥିପାଇଁ ନିଶ୍ଚିତ ଭାବରେ କିଛି ସମୟ ଅପେକ୍ଷା କରିବାକୁ ହେବ । ପରିବେଶୀୟ ପ୍ରଦୂଷଣ ରୂପୀ ସମସ୍ୟାଟି ବିକାଶଶୀଳ ବା ଶିଳ୍ପୋନ୍ନତ ରାଷ୍ଟ୍ର ନିର୍ବିଶେଷରେ ସର୍ବତ୍ର ଯେପରି ଜନ ଜୀବନକୁ ଅତିଷ୍ଠ କରୁଛି, ତାହା ଫଳରେ ଯଥାଶୀଘ୍ର ମନୁଷ୍ୟର ଚେତନାରେ ଉଲ୍ଲିଖିତ ଶୁଭକାରୀ ଭାବନାଗୁଡ଼ିକର ଜାଗରଣ ସଂଭବ ହେବ । ଏବେ ତଥ୍ୟ-ବିଜ୍ଞାନ, ଆଣବିକ ଜୀବ ବିଜ୍ଞାନ, ଜୈବ ପ୍ରଯୁକ୍ତି ବିଦ୍ୟା, ଅଣପାରମ୍ପରିକ ଶକ୍ତି ଉତ୍ସଗୁଡ଼ିକର ବ୍ୟାବହାରିକ ଉପଯୋଗ, ଜୈବ-ବିବିଧତାର ସଂଭାବ୍ୟ ବହୁମୁଖୀ ଉପଯୋଗ, ମାଇକ୍ରୋଇଲେକ୍‌ଟ୍ରୋନିକ୍ସ ପ୍ରବର୍ତ୍ତିତ ଅନୁପ୍ରଯୁକ୍ତି ବିଦ୍ୟା ବା ନାନୋଟେକ୍‌ନୋଲଜି ପ୍ରଭୃତି କ୍ଷେତ୍ରଗୁଡ଼ିକର ଯେଉଁ ପ୍ରକାର ତ୍ୱରାନ୍ୱିତ ସମୃଦ୍ଧି ସାଧନ କରାଯାଉଛି ଏବଂ ପ୍ରଗତିଶୀଳତା ସତ୍ତ୍ୱେ ବିକେନ୍ଦ୍ରୀକୃତ ମାର୍ଗରେ ଜନସାଧାରଣଙ୍କ ପ୍ରତ୍ୟକ୍ଷ ସହଯୋଗ ବଳରେ ଏଗୁଡ଼ିକର ସାହାଯ୍ୟ ନିଆଯାଇ ପ୍ରଗତିଶୀଳ କାର୍ଯ୍ୟକ୍ରମଗୁଡ଼ିକୁ ପରିବେଶର ପରିପୋଷଣକାରୀ ମାର୍ଗରେ କାର୍ଯ୍ୟକାରୀ କରାଯିବାର ଯେଉଁ ସଂଭାବନା ରହିଛି, ତାହାକୁ ବିଚାରକୁ ନେଇ ଭବିଷ୍ୟତ ପାଇଁ ସୁଚିନ୍ତିତ ଯୋଜନାଗୁଡ଼ିକୁ ପ୍ରଣୟନ କରିବା ଦ୍ୱାରା ଓ ସେଗୁଡ଼ିକୁ ଯଥାବିଧି କାର୍ଯ୍ୟକାରୀ

କରାଇବା ଦ୍ୱାରା ହିଁ ପ୍ରତ୍ୟେକ ଦେଶର ଭବିଷ୍ୟତ ଉଜ୍ଜ୍ୱଳମୟ ହୋଇ ପାରିବାର ଅବକାଶ ରହିଛି । ସ୍ଥୂଳ ଭାବରେ ଏପରି କର୍ମାଭିମୁଖ୍ୟ ପ୍ରବର୍ତ୍ତିତ ସମାଜର ସଂରଚନାକୁ ହିଁ ସଂପ୍ରତି ତଥ୍ୟାଶ୍ରୟୀ ବା ଜ୍ଞାନାଶ୍ରୟୀ ସମାଜ ନାମରେ ଅଭିହିତ କରାଯାଉଛି । ଏହି ଶତାବ୍ଦୀର ଅନ୍ତିମ ପର୍ଯ୍ୟାୟରେ ଶିଳ୍ପୋନ୍ନତ ରାଷ୍ଟ୍ରଗୁଡ଼ିକ ଏବଂବିଧ ଜ୍ଞାନାଶ୍ରୟୀ ସମାଜର ପ୍ରତିଷ୍ଠା ପାଇଁ ବ୍ୟାପକ ସଜବାଜ ଚଳାଉଥିବା ବେଳେ ଆମ ଦେଶରେ ଏହାର ପ୍ରତିଷ୍ଠା ପାଇଁ ରାଜନୈତିକ ଓ ଅର୍ଥନୈତିକ କାର୍ଯ୍ୟକ୍ରମଗୁଡ଼ିକୁ ଠିକଣା ମାର୍ଗରେ ପରିଚାଳନା କରିବା ସଂଭବ ହେଉନାହିଁ । ଆମ ଦେଶରେ ଏଥିପାଇଁ ଆବଶ୍ୟକୀୟ ଜନସମ୍ବଳର ଅଭାବ ନାହିଁ । ମାତ୍ର ଦୃଢ଼ ରାଜନୈତିକ ମନୋବଳର ଅଭାବ ଓ ରାଜନୈତିକ ଅସ୍ଥିରତା ଏବଂ ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀଙ୍କ ଖଳ ଚକ୍ରାନ୍ତ ଯୋଗୁଁ ପ୍ରଗତିକାମୀ ବ୍ୟବସ୍ଥାଗୁଡ଼ିକର କର୍ମାଭିମୁଖ୍ୟରେ ଶୁଭକାରୀ ପରିବର୍ତ୍ତନ ଘଟାଇବା ସଂଭବ ହେଉନାହିଁ । ଯେଉଁ ପନ୍ଥା ଅନୁସରଣ କରିବା ଦ୍ୱାରା ଅତୀତରେ ଶିଳ୍ପୋନ୍ନତ ରାଷ୍ଟ୍ରଗୁଡ଼ିକ ଶୋଷଣପ୍ରବଣ ନୀତି ଅବଲମ୍ବନରେ ପୃଥିବୀ ବକ୍ଷରେ ସାମ୍ରାଜ୍ୟବାଦ ପ୍ରତିଷ୍ଠା କରିବା ପୂର୍ବକ ଇତର ଦେଶମାନଙ୍କରୁ ପ୍ରାକୃତିକ ସଂପଦଗୁଡ଼ିକୁ ଲୁଣ୍ଠନ କରିଥିଲେ ଏବଂ ପରିବେଶର ବ୍ୟାପକ ପ୍ରଦୂଷଣ ଘଟାଇଥିଲେ, ତାହାକୁ ହିଁ ଉଣାଅଧିକେ ଆମ ଦେଶର ପ୍ରଗତିଶୀଳତାର କର୍ମାଭିମୁଖ୍ୟ ରୂପେ ଗ୍ରହଣ କରାଯାଉଛି । ସାମ୍ରାଜ୍ୟବାଦ ଅବଶ୍ୟ ପୃଥିବୀ ବକ୍ଷରୁ ପ୍ରାୟତଃ ବିଲୁପ୍ତ ହୋଇଛି । ମାତ୍ର ଅର୍ଥନୈତିକ କାରସାଦୀ ବଳରେ ନବ-ସାମ୍ରାଜ୍ୟବାଦର ପ୍ରତିଷ୍ଠା ପାଇଁ ଶିଳ୍ପୋନ୍ନତ ରାଷ୍ଟ୍ରଗୁଡ଼ିକ ଆନୁକୂଲ୍ୟରେ ତଥା ବହୁଦେଶୀୟ କର୍ପୋରେସନଗୁଡ଼ିକର ବ୍ୟାବସାୟିକ କାରସାଦୀ ବଳରେ ଯେଉଁ ଚକ୍ରାନ୍ତ ବଳବତ୍ତର ରହିଛି, ଆମ ଦେଶ ମଧ୍ୟ ତାହାର ଶିକାର ହେଉଛି । ମାନବୀୟ ଇତିହାସର ଏହା ଏକ କ୍ରାନ୍ତିକାରୀ ସମୟ । ଏପରି ଘଡ଼ିସନ୍ଧି ମୁହୂର୍ତ୍ତରେ ସେହି ଦେଶଗୁଡ଼ିକରେ ପ୍ରତିଷ୍ଠିତ ଶିଳ୍ପାନୁଷ୍ଠାନଗୁଡ଼ିକ ଜ୍ଞାନାଶ୍ରୟୀ ସମାଜକୁ ବାସ୍ତବ ରୂପ ଦେବା ପାଇଁ ବ୍ୟାପକ ଉଦ୍ୟମ ଚଳାଇବା ଅବସରରେ ନିଜ ଦେଶରେ ତଥା ନିଜ ନିଜ ଅନୁଷ୍ଠାନରେ ଉତ୍ପାଦିତ ବର୍ଜିତ ଦ୍ରବ୍ୟଗୁଡ଼ିକୁ ଓ ପୁରୁଣା ଟେକ୍‌ନୋଲଜିଗୁଡ଼ିକୁ ବିକାଶଶୀଳ ରାଷ୍ଟ୍ରଗୁଡ଼ିକୁ ରପ୍ତାନୀ କରିବାକୁ ଲାଭପ୍ରଦ ମଣୁଛନ୍ତି । ଆମ ଦେଶ ମଧ୍ୟ ସେମାନଙ୍କ ପ୍ରଲୋଭନର ଶିକାର ହେଉଛି । ପୂର୍ବ ସୂଚିତ ଆଲୋଚନାରେ ଅଟୋମୋବାଇଲଗୁଡ଼ିକର ଆମଦାନୀ ସଂପର୍କରେ ଯେଉଁ ତଥ୍ୟ ପରିବେଷିତ ହୋଇଛି, ସେଥିରୁ ଏପରି ବକ୍ତବ୍ୟର ସତ୍ୟତା ପ୍ରତିପାଦିତ ହେଉନାହିଁ କି ? ବିଭିନ୍ନ ପ୍ରକାର କୀଟନାଶକ ଦ୍ରବ୍ୟ, ଔଷଧ, ଶିଳ୍ପଜାତ ଦ୍ରବ୍ୟ ବା ଉପକରଣ ନିଜ ନିଜ ଦେଶର ଉପଭୋକ୍ତାମାନଙ୍କ ଦ୍ୱାରା ବାଜ୍ୟାପ୍ତ ହେବା ପରେ

ଶିଳ୍ପୋନ୍ନତ ରାଷ୍ଟ୍ରଗୁଡ଼ିକ ସାମୟିକ ଲାଭ ଆଶାରେ ଏଗୁଡ଼ିକୁ ବିକାଶଶୀଳ ରାଷ୍ଟ୍ରଗୁଡ଼ିକୁ ରପ୍ତାନୀ କରାଇବାର ଯେଉଁ ଅପଚେଷ୍ଟା ଚଳାଇଛନ୍ତି, ତାହାକୁ ଆମ ଦେଶର ଲାଭଖୋର ଶିଳ୍ପପତି ଓ ବ୍ୟବସାୟୀମାନେ ଆପଣାର କରିନେବାକୁ ଆଗଭର ହେଉଛନ୍ତି ଏବଂ ଏଥିପାଇଁ ସେମାନେ ଦୁର୍ନୀତିପରାୟଣ ରାଜନୈତିକ ନେତୃବର୍ଗଙ୍କଠାରୁ ଆନୁଷଙ୍ଗିକ ସହଯୋଗ ପାଇ ପାରୁଛନ୍ତି । ଏଣୁ, ଆମ ଦେଶରେ ଲକ୍ଷ୍ୟ କରାଯାଉଛି ଯେ ଜାତୀୟ ଘରୋଇ ଉତ୍ପାଦନରେ ଏକ-ଏକକ ବୃଦ୍ଧି ଘଟିବା ଅବସରରେ ପରିବେଶୀୟ ପ୍ରଦୂଷଣର ମାତ୍ରାରେ ୨.୫ ଏକକ ଅଭିବୃଦ୍ଧି ଘଟୁଛି । ଏଥିପାଇଁ ନଗରାଞ୍ଚଳ ଓ ଶିଳ୍ପାଞ୍ଚଳର ପରିବେଶୀୟ ଦୁର୍ଗତି ଦିନକୁ ଦିନ ଉତ୍କଟ ରୂପ ଧାରଣ କରୁଛି ଏବଂ ଜନଜୀବନ ଦୁର୍ବିସହ ହେଉଛି । ଏପରି ଅବସ୍ଥାର ପ୍ରତିକାର କରାଯିବ କିପରି ? ଏହା ଏକ ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ ତଥା ଜୀବନ-ମରଣ ସମସ୍ୟା ହୋଇଥିଲେ ମଧ୍ୟ ଅଦ୍ୟାବଧି ସୁସ୍ଥ ତଥା ଜାଗ୍ରତ ଜନମତର ଚାପରେ ସରକାରୀ କର୍ତ୍ତୃପକ୍ଷ ଏ ଦିଗରେ ବିହୀତ କାର୍ଯ୍ୟାନୁଷ୍ଠାନଗୁଡ଼ିକୁ କାର୍ଯ୍ୟକାରୀ କରାଇବାକୁ ଅପାରଗ ହୋଇଛନ୍ତି । ଆମେ ଆଶା କରିବା ଯେ ଆଉ କିଛି ବର୍ଷ ପରେ ପରିସ୍ଥିତି ଅଣାୟତ୍ତ ଓ ଅତୀବ ଆତଙ୍କପ୍ରଦ ହୋଇଯିବା ପରେ ହିଁ ଜାଗ୍ରତ ଜନମତର ଚାପରେ ସରକାରୀ କର୍ତ୍ତୃପକ୍ଷ ଠିକଣା ନୀତିଗୁଡ଼ିକ ବଳରେ ଉପଯୁକ୍ତ କାର୍ଯ୍ୟାନୁଷ୍ଠାନଗୁଡ଼ି କାର୍ଯ୍ୟକାରୀ କରାଇବାକୁ ବାଧ ହେବେ । ଅବଶ୍ୟ, ସେତେବେଳକୁ ଲେଡ଼ି ଗୁଡ଼ କହୁଣୀକୁ ବୋହି ଯାଇଥିବ ଏବଂ ଆମ ଦେଶର ନଗରାଞ୍ଚଳ ଓ ଶିଳ୍ପାଞ୍ଚଳର ଲକ୍ଷ ଲକ୍ଷ ବାସିନ୍ଦା ପରିବେଶୀୟ ପ୍ରଦୂଷଣର କୁପ୍ରଭାବ ଯୋଗୁଁ ମୃତ୍ୟୁ କବଳିତ ହୋଇଥିବେ ଓ ଅଧିକାଂଶ ବାସିନ୍ଦା ରୁଗ୍ଣ ଜୀବନ ବିତାଇବାକୁ ବାଧ ହୋଇଥିବେ ।

ନଗରାଞ୍ଚଳ ଓ ଶିଳ୍ପାଞ୍ଚଳର ପରିବେଶକେନ୍ଦ୍ରିକ ସମସ୍ୟାଗୁଡ଼ିକର ଆଶୁ ପ୍ରତିକାର ସମ୍ଭବ ହେବା ପରି ଜଣାପଡୁ ନାହିଁ । ସର୍ବବିଧ ପ୍ରସାର ମାଧ୍ୟମ ବିଲକ୍ଷଣଗୁଡ଼ିକ ସଂମ୍ପର୍କରେ ଜ୍ଞାତବ୍ୟ ତଥ୍ୟରାଜିକୁ ପ୍ରଚାର କରିବା ବ୍ୟାପାରରେ ଅବଶ୍ୟ ପାରଦର୍ଶିତା ପ୍ରଦର୍ଶନ କରୁଛନ୍ତି; ମାତ୍ର ବିଚାର ବିଭାଗକୁ ବାଦ୍ ଦେଲେ ଅନ୍ୟ କେହି ଏ ଦିଗରେ ବିଶେଷ ଫଳପ୍ରଦ ପଦକ୍ଷେପଗୁଡ଼ିକୁ କାର୍ଯ୍ୟକାରୀ କରାଉନାହାନ୍ତି । ନଗରାଞ୍ଚଳ ଓ ଶିଳ୍ପାଞ୍ଚଳମାନଙ୍କରେ ଏପରି ପରିସ୍ଥିତି ସୃଷ୍ଟି ହୋଇଥିବା ବେଳେ ବିଗତ ଦୁଇ ଦଶନ୍ଧି ମଧ୍ୟରେ ବେସରକାରୀ ସେବାକାରୀ ସଙ୍ଗଠନ ଗୁଡ଼ିକ (NGOs) ଜରିଆରେ ତଥା ଜନସାଧାରଣଙ୍କ ପ୍ରତ୍ୟକ୍ଷ ସହଯୋଗ ବଳରେ ଯେଉଁ ଅଭିନନ୍ଦନୀୟ ପଦକ୍ଷେପଗୁଡ଼ିକୁ ଗ୍ରାମାଞ୍ଚଳରେ କାର୍ଯ୍ୟକାରୀ କରାଯାଇଛି, ତାହା ଲୋକଲୋଚନକୁ ଆସି ପାରୁନାହିଁ । ପ୍ରସାର ମାଧ୍ୟମଗୁଡ଼ିକର

ଏକଦିଶୀ ସହର-କେନ୍ଦ୍ରିକ କ୍ରିୟାଶୀଳତା ହିଁ ଏହି ବ୍ୟାପାରରେ ଗୁରୁତର ପ୍ରତିବନ୍ଧକ ସୃଷ୍ଟି କରୁଛି । ଗୋଟିଏ ଅଞ୍ଚଳର ବାସିନ୍ଦାମାନେ ନବୀକରଣ-କ୍ଷମତା ଓ କର୍ତ୍ତବ୍ୟନିଷ୍ଠା ବଳରେ ଯେଉଁ କାର୍ଯ୍ୟକ୍ରମଗୁଡ଼ିକୁ ସଫଳ ଭାବରେ କାର୍ଯ୍ୟକାରୀ କରାଇଛନ୍ତି, ତାହା ସମଧର୍ମୀ ଇତର ଅଞ୍ଚଳର ବାସିନ୍ଦାମାନଙ୍କ ଜ୍ଞାତସାରକୁ ଆସି ପାରୁ ନାହିଁ । ଉଦାହରଣ ସ୍ୱରୂପ, ଝାବୁଆର ବାସିନ୍ଦାମାନେ ପର୍ଯ୍ୟାବରଣକୁ ଅଧୋଗତିରୁ ରକ୍ଷା କରିବା ପୂର୍ବକ ନିଜ ନିଜର ଦାରିଦ୍ର୍ୟର ଅପସାରଣ ଦିଗରେ ଯେଉଁ କାର୍ଯ୍ୟକ୍ରମଗୁଡ଼ିକୁ ଯେପରି ଭାବରେ କାର୍ଯ୍ୟକାରୀ କରାଇଥିଲେ, ତାହା ଅନ୍ୟ ସମଧର୍ମୀ ଅଞ୍ଚଳର ବାସିନ୍ଦାମାନଙ୍କୁ ଜଣାଇ ଦେବା ଦିଗରେ ପ୍ରସାର ମାଧମଗୁଡ଼ିକ କୌଣସି ପଦକ୍ଷେପ ଗ୍ରହଣ କରି ନାହାନ୍ତି .। ଇଂରାଜୀ ଭାଷାରେ ପ୍ରକାଶିତ ସମ୍ବାଦପତ୍ରଗୁଡ଼ିକ ମଧ ଏପରି ସମ୍ବାଦ ପ୍ରକାଶ ନ କରିବା ଅସ୍ୱାଭାବିକ ବୋଧ ହେଉନାହିଁ; କାରଣ ଏଗୁଡ଼ିକ ସହର-କେନ୍ଦ୍ରିକ । ମାତ୍ର ଦୁଃଖର କଥା ଯେ ମଧପ୍ରଦେଶରୁ ହିନ୍ଦୀ ଭାଷାରେ ପ୍ରକାଶିତ ସମ୍ବାଦପତ୍ରଗୁଡ଼ିକ ମଧ ଏଦିଗରେ କୌଣସି ଫଳପ୍ରଦ ଭୂମିକା ଗ୍ରହଣ କରି ନାହାନ୍ତି । ବିଭିନ୍ନ ଟେଲିଭିଜନ ଚ୍ୟାନେଲଗୁଡ଼ିକ ମଧ ଏଭଳି ସମ୍ବାଦଗୁଡ଼ିକର ପ୍ରସାର ଦିଗରେ ଯତ୍ନବାନ୍ ହେବାକୁ ସ୍ପୃହଣୀୟ ମଣୁନାହାନ୍ତି । ଆମେ ଆଶା କରିବା ଯେ ଗ୍ରାମାଞ୍ଚଳର ଉନ୍ନୟନ ପ୍ରକ୍ରିୟାଗୁଡ଼ିକୁ ଦେଶର ବିଭିନ୍ନ ଅଞ୍ଚଳରେ ନୂଆ ନୂଆ କୌଶଳ ଅବଲମ୍ବନରେ ତଥା ପରିବେଶର ପରିପୋଷଣକାରୀ ମାର୍ଗରେ କାର୍ଯ୍ୟକାରୀ କରାଯିବା ଦ୍ୱାରା ତଥା ସେଗୁଡ଼ିକ ପ୍ରକାଶ୍ୟ ମାର୍ଗରେ ଗ୍ରାମ୍ୟ ଜୀବନର ଗୁଣାତ୍ମକ ମାନରେ ଅଭିବୃଦ୍ଧି ଘଟାଇବା ଦ୍ୱାରା ଭବିଷ୍ୟତରେ ପ୍ରସାର ମାଧମଗୁଡ଼ିକ ଏ ଦିଗରେ ଉପଯୁକ୍ତ ଧ୍ୟାନ ଦେବାକୁ ବାଧ ହେବେ ଏବଂ ଏହା ଆମ ଦେଶର ଗ୍ରାମାଞ୍ଚଳର ଉନ୍ନୟନର ପଥକୁ ସୁଗମ୍ୟ କରାଇବାରେ ସହାୟକ ହେବ ।



# ୪

## ଜନସ୍ୱାର୍ଥ ବିରୋଧୀ ସମସ୍ୟାରାଜିର ସମାଧାନ ଦିଗରେ ଅପାରଗତା

ଜାତିର ଜନକ ମହାତ୍ମା ଗାନ୍ଧୀ ଗ୍ରାମବହୁଳ ଆମ ଦେଶରେ ଗ୍ରାମ ସ୍ୱରାଜ୍ୟର ପ୍ରତିଷ୍ଠା ପାଇଁ ଦିଗ୍‌ଦର୍ଶନ ପ୍ରଦାନ କରିଥିଲେ । ସେ ଚାହିଁଥିଲେ ଯେ ଭାରତବର୍ଷରେ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ଏପରି ସଦୁପଯୋଗ କରାଯିବ ଯେ ଗ୍ରାମବାସୀମାନେ ନିଜ ନିଜ କାର୍ଯ୍ୟଦକ୍ଷତାର ସମ୍ୟକ ଉପଯୋଗ କରିବା ପାଇଁ ଉପଯୁକ୍ତ ଆୟକାରୀ ଧନ୍ଦାଗୁଡ଼ିକରେ ଆତ୍ମନିୟୋଗ କରିବାକୁ ସମର୍ଥ ହେବେ । ସେ ଆହୁରି ମଧ୍ୟ ଚାହିଁଥିଲେ ଯେ ଆମ ଦେଶର ବିତ୍ତବଶାଳୀ ବ୍ୟକ୍ତିମାନେ ଅର୍ଜିତ ଓ ସଞ୍ଚିତ ସମ୍ପଦର ଟ୍ରଷ୍ଟି ଭାବରେ କ୍ରିୟାଶୀଳ ହୁଅନ୍ତୁ । ଏତଦ୍ୱାରା ସେମାନେ ଅନ୍ୟମାନଙ୍କ ପାଇଁ ଜୀବିକା ସୃଷ୍ଟି କରିବାକୁ ସମର୍ଥ ହେବା ସଙ୍ଗେ ସଙ୍ଗେ ସାମାଜିକ ମର୍ଯ୍ୟାଦାସମ୍ପନ୍ନ ଜୀବନ ଯାପନ କରିବାରେ ଆତ୍ମ ସନ୍ତୋଷ ଲାଭ କରିବେ । ସର୍ବଜନ ହିତାୟ, ସର୍ବଜନ ସୁଖାୟ ଭଳି ମହାନ ଜୀବନାଦର୍ଶକୁ ଯଥାର୍ଥ ମାର୍ଗରେ କ୍ରିୟାଶୀଳ କରାଯିବା ସମ୍ଭବ ହେଲେ ଭାରତବାସୀ ଆତ୍ମନିର୍ଭରଶୀଳ ଜୀବନ ବିତାଇବାକୁ ସମର୍ଥ ହେବେ । ଏତଦ୍ୱାରା ଦାରିଦ୍ର୍ୟର ଅପସାରଣ ଘଟିବା ସଙ୍ଗେ ସଙ୍ଗେ ଜନସାଧାରଣ ଦୃଢ଼ ଆତ୍ମପ୍ରତ୍ୟୟ ବଳରେ ସାମାଜିକ ଜୀବନର ସୁଖଶାନ୍ତିମୟତାକୁ ଆବର୍ଦ୍ଧିତ କରାଇ ପାରିବା ଭଳି କର୍ମାଭିମୁଖ୍ୟକୁ ଆପଣାର କରି ପାରିବେ । ମାତ୍ର, ଗାନ୍ଧିଜୀଙ୍କ ଜନ୍ମଭୂମିରେ ହିଁ ଏହାର ବିପରୀତଧର୍ମୀ ଆଚରଣର ଆତିଶଯ୍ୟ ଜନଜୀବନକୁ ଅତିଷ୍ଠ କରୁଛି । ସ୍ୱାର୍ଥପରତା, ଦୁର୍ନୀତିପରାୟଣତା, ଶୋଷଣପ୍ରବଣତା ଓ ଶଠତା ହିଁ ଅର୍ଥ ଓ କ୍ଷମତାର ଆବର୍ଦ୍ଧନ ଦିଗରେ ଆମ ଦେଶର ଉପଭୋଗୀ ଗୋଷ୍ଠୀକୁ କର୍ମତତ୍ପର କରାଇଛି । ନିମ୍ନସୂଚିତ କତିପୟ ଦୃଷ୍ଟାନ୍ତରୁ ଏହି ମନ୍ତବ୍ୟର ଯଥାର୍ଥତା ଅନାୟାସରେ ଉପଲବ୍ଧ ହେବ ।

ଯେଉଁ ପରିବେଶ-କେନ୍ଦ୍ରିକ ସମସ୍ୟାଗୁଡ଼ିକ ଆମ ଦେଶରେ ଜନ-ଅନ୍ଦୋଳନକୁ ତୀବ୍ରତର କରାଇଛି, ତନ୍ମଧ୍ୟରେ ନଦୀବନ୍ଧ ଯୋଜନାଗୁଡ଼ିକର ନିର୍ମାଣ ପ୍ରମୁଖ ଭୂମିକା ଗ୍ରହଣ କରିଛି । ସୁବୃହତ୍ ନଦୀବନ୍ଧ ଯୋଜନାଗୁଡ଼ିକୁ କାର୍ଯ୍ୟକାରୀ କରାଯିବା ଦ୍ୱାରା ବହୁ ଗୁରୁତ୍ୱପୂର୍ଣ୍ଣ ତଥା ଉପଯୋଗୀ ପରିସଂସ୍ଥା (eco-systems) ଜଳମଗ୍ନ ହେବାର ସମ୍ଭାବନା ରହିଛି; ଅନେକ ପ୍ରତ୍ନତାତ୍ତ୍ୱିକ କୀର୍ତ୍ତି ମଧ୍ୟ ଜଳ ଗର୍ଭରେ ବିଲୀନ ହୋଇଯିବାର ସମ୍ଭାବନା ରହିଛି ଏବଂ ଅନେକ ଗ୍ରାମ ଜଳମଗ୍ନ ହେଉଥିବାରୁ ସେଠାକାର ବାସିନ୍ଦାମାନଙ୍କୁ ସ୍ଥାନାନ୍ତରୀତ କରାଯିବାର ଅନୀବାର୍ଯ୍ୟ ଆବଶ୍ୟକତା ଉପୁଜୁଛି । ସରକାର କୌଣସି ନଦୀବନ୍ଧ ଯୋଜନାକୁ କାର୍ଯ୍ୟକାରୀ କରାଯିବା ସମ୍ପର୍କରେ ଆନୁଷଙ୍ଗିକ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବା ଅବସରରେ ତତ୍‌ସଂପୃକ୍ତ ଜନସାଧାରଣ ଏହାର ଉପକାରିତା ଓ ଅପକାରିତା ସମ୍ପର୍କରେ ବିଚାର କରୁଛନ୍ତି ଏବଂ ଯେଉଁ ଯୋଜନାଗୁଡ଼ିକର କାର୍ଯ୍ୟକାରିତା ଯୋଗୁଁ ଲାଭ ତୁଳନାରେ କ୍ଷତିର ସମ୍ଭାବନା ଅଧିକ ହେଉଛି, ସେଗୁଡ଼ିକୁ ଜନମତର ଚାପରେ ବନ୍ଦ କରି ଦିଆଯାଉଛି ।

ଜନମତ ପରିପ୍ରେକ୍ଷୀରେ ସରକାର ଇତ୍ୟବସରରେ ଯେଉଁ ପ୍ରକାରେ କର୍ମପ୍ରବଣ ହୋଇଛନ୍ତି ତାହାକୁ ଅନୁଧ୍ୟାନ କରିବାର ଫଳ ସ୍ୱରୂପ ଜଣାପଡୁଛି ଯେ ଯେଉଁ ଅଞ୍ଚଳମାନଙ୍କରେ ପର୍ଯ୍ୟାବରଣୀୟ କ୍ଷତିର ସମ୍ଭାବନା ଅଧିକ ହେଉଛି, ସେପରି ଯୋଜନାଗୁଡ଼ିକୁ ବନ୍ଦ କରି ଦିଆଯାଇଛି; ମାତ୍ର ଯେଉଁ ଅଞ୍ଚଳମାନଙ୍କରେ ସ୍ଥାନାନ୍ତରୀତ ଜନସାଧାରଣଙ୍କ ଥାଇଥାନକୁ କେନ୍ଦ୍ର କରି ବିବାଦର ସୂତ୍ରପାତ ଘଟୁଛି, ସେପରି ଯୋଜନାଗୁଡ଼ିକର କାର୍ଯ୍ୟକାରିତା ବିଳମ୍ବିତ ହେଉଥିଲେ ମଧ୍ୟ ସେଗୁଡ଼ିକ ବନ୍ଦ କରାଯାଉନାହିଁ । ଆଦିବାସୀ ଓ ଅବହେଳିତ ସଂପ୍ରଦାୟ ସେମାନଙ୍କ ଭିଟାମାଟି ଛାଡ଼ି ଅନ୍ୟତ୍ର ଚାଲିଯିବାକୁ ଅମଙ୍ଗ ହେଉଛନ୍ତି । ପୁଣି, ସେମାନଙ୍କ ପାଇଁ ଯେପରି ଅଚିନ୍ତନୀୟ ମାର୍ଗରେ ଅପନ୍ତରା ସ୍ଥାନମାନଙ୍କରେ ଥାଇଥାନ ପାଇଁ ବ୍ୟବସ୍ଥା କରାଯାଉଛି, ସେଠାରେ ସେମାନେ ସେମାନଙ୍କ ପାରମ୍ପରିକ ଧନ୍ଦାରେ ଆତ୍ମନିୟୋଗ କରିବାର ଅବକାଶ ନାହିଁ । ସ୍ଥାନୀୟ ସେବାକାରୀ ସଙ୍ଗଠନଗୁଡ଼ିକର ନେତୃତ୍ୱରେ ଏହି ସ୍ଥାନଚ୍ୟୁତ ବ୍ୟକ୍ତିମାନେ ଯେଉଁ ଅନ୍ଦୋଳନ ଚଳାଉଛନ୍ତି, ତାହା ରାଜନୈତିକ ନେତୃବର୍ଗଙ୍କୁ ବିଶେଷଭାବରେ ପ୍ରଭାବିତ କରୁନାହିଁ । ଭୋଟ ବଳରେ ନିର୍ବାଚନରେ ଜୟ ଲାଭ କରିବା ବ୍ୟାପାରକୁ ପ୍ରତିଭାଶାଳୀ ନ୍ୟସ୍ତସ୍ୱାର୍ଥ ବ୍ୟକ୍ତିମାନେ ଏପରି ଚତୁରତାର ସହିତ କାର୍ଯ୍ୟକାରୀ କରାଉଛନ୍ତି ଯେ ଏହି ଅଶିକ୍ଷିତ ଓ ନିରୀହ ବ୍ୟକ୍ତିମାନେ ସେମାନଙ୍କ ଖଳ ଚକ୍ରାନ୍ତର ଶିକାର ହେଉଛନ୍ତି । ରାଜନୈତିକ ସ୍ତରରେ

ଏମାନଙ୍କ ସ୍ୱାର୍ଥ ସଂରକ୍ଷଣ ପାଇଁ କୌଣସି ରାଜନୈତିକ ଦଳ ଆନ୍ତରିକତାର ସହିତ କ୍ରିୟାଶୀଳ ହେଉଥିବା ପରି ଜଣାପଡୁ ନାହିଁ । ନିରକ୍ଷରତା ହିଁ ଗଣତନ୍ତ୍ରିକ ପ୍ରଶାସନିକ ବ୍ୟବସ୍ଥାର ସୁସଂଯତ ବିକାଶ ପଥରେ ଅନ୍ତରାୟ ସୃଷ୍ଟି କରୁଛି । ନିମ୍ନଲିଖିତ ନଦୀବନ୍ଧ ଯୋଜନା ବାବଦ କାର୍ଯ୍ୟକ୍ରମଗୁଡ଼ିକୁ ପର୍ଯ୍ୟାବରଣୀୟ ବିଭବରାଜିର ସୁରକ୍ଷା ପାଇଁ ବନ୍ଦ କରି ଦିଆଯିବାର ନିଷ୍ପତ୍ତି ଗୃହୀତ ହୋଇଛି :

(କ) କର୍ଣ୍ଣାଟକ ରାଜ୍ୟର ବେଡ଼ଥି (Bedthi) ନଦୀବନ୍ଧ ଯୋଜନା :- ଏହାକୁ କାର୍ଯ୍ୟକାରୀ କରାଯାଇଥିଲେ ୬୦୬୫ ହେକ୍ଟର ଉର୍ବର ଶସ୍ୟକ୍ଷେତ୍ର ଓ ୪୧୨୬ ହେକ୍ଟର ଘନ ଜଙ୍ଗଲ ଜଳ ଗର୍ଭରେ ବିଲୀନ ହେବା ସଙ୍ଗେ ସଙ୍ଗେ ୪୦୦୦ ଆଦିବାସୀଙ୍କୁ ସ୍ଥାନଚ୍ୟୁତ କରାଯିବା ଅନୀବାର୍ଯ୍ୟ ହୋଇଥାଆନ୍ତା ।

(ଖ) କେରଳ ରାଜ୍ୟର ନୀରବ ଉପତ୍ୟକା ବା Silent Valley :- ଏହି ଯୋଜନାଟିକୁ କାର୍ଯ୍ୟକାରୀ କରାଯାଇଥିଲେ ଅଳ୍ପସଂଖ୍ୟକ ବାସିନ୍ଦାଙ୍କୁ ଅବଶ୍ୟ ସ୍ଥାନଚ୍ୟୁତ କରାଯିବା ଅନୀବାର୍ଯ୍ୟ ହୋଇଥାଆନ୍ତା; ମାତ୍ର ଏଥିପାଇଁ ସୁବିସ୍ତୃତ ପ୍ରାକୃତିକ ଜଙ୍ଗଲ ନଦୀ ଗର୍ଭରେ ନିମଗ୍ନ ହୋଇଥାଆନ୍ତା ।

(ଗ) ମଧ୍ୟ ପ୍ରଦେଶର ବୋଧଘାଟ ନଦୀବନ୍ଧ ଯୋଜନା :- ଏହାକୁ କାର୍ଯ୍ୟକାରୀ କରାଯାଇଥିଲେ ୧୩.୮ ନିୟୁତ ହେକ୍ଟର (mha) ଜଙ୍ଗଲ ଜଳ ମଧ୍ୟରେ ନିମଗ୍ନ ହୋଇଥାଆନ୍ତା ଏବଂ ଏଥିପାଇଁ ପ୍ରାୟ ୧୦,୦୦୦ ଆଦିବାସୀ ସ୍ଥାନଚ୍ୟୁତ ହୋଇଥାଆନ୍ତେ ।

ମାତ୍ର ବହୁସଂଖ୍ୟକ ଆଦିବାସୀ ଓ ଅବହେଳିତ ସଂପ୍ରଦାୟର ବାସିନ୍ଦାମାନେ ସ୍ଥାନଚ୍ୟୁତ ହେବାର ସମ୍ଭାବନା ଥିବା କତିପୟ ସୁବୃହତ୍ ଯୋଜନାକୁ ତୀବ୍ର ଜନ ଆନ୍ଦୋଳନ ସତ୍ତ୍ୱେ ସରକାର ବନ୍ଦ କରିଦେବାକୁ ଚାହୁଁନାହାନ୍ତି । ସ୍ଥାନଚ୍ୟୁତ ବ୍ୟକ୍ତିମାନଙ୍କ ଥାଇଥାନକୁ କେନ୍ଦ୍ର କରି ଏପରି ତୀବ୍ର ଆନ୍ଦୋଳନ ସଂଘଟିତ ହେଉଛି ଯେ ବାରମ୍ବାର ନିର୍ମାଣ କାର୍ଯ୍ୟରେ ବାଧା ଉପୁଜୁଛି । ବାରମ୍ବାର ନ୍ୟାୟାଳୟର ଆଶ୍ରୟ ନିଆଯାଉ ଥିବାରୁ ନିର୍ମାଣ କାର୍ଯ୍ୟ ସାମୟିକ ଭାବରେ ସ୍ଥଗିତ ରହୁଛି । ଏଥିପାଇଁ ସମୟକ୍ରମେ ମୁଦ୍ରାସ୍ଫୀତି ଅନୁକ୍ରମରେ ଯୋଜନାଗୁଡ଼ିକର ବ୍ୟୟଭାର ବଢ଼ିବାରେ ଲାଗିଛି । ମାତ୍ର ସବୁ ଅଞ୍ଚଳର ସ୍ଥାନଚ୍ୟୁତ ବ୍ୟକ୍ତିମାନଙ୍କ ପାଇଁ ସେମାନଙ୍କ ସ୍ୱାର୍ଥର ସଂରକ୍ଷଣ ଦିଗରେ କୌଣସି ସନ୍ତୋଷପ୍ରଦ ନୀତି ପ୍ରଣୟନ କରିବା ତଥା ତାହାକୁ ନିରପେକ୍ଷ ମାର୍ଗରେ କାର୍ଯ୍ୟକାରୀ କରାଇବା ଅଦ୍ୟାବଧି ସମ୍ଭବ ହେଉନାହିଁ । ନିମ୍ନଲିଖିତ ସୁବୃହତ୍ ଓ ବହୁବ୍ୟୟସାପେକ୍ଷ ନଦୀବନ୍ଧ ଯୋଜନାଗୁଡ଼ିକର କାର୍ଯ୍ୟକାରିତା କ୍ଷେତ୍ରରେ ଏପରି ଅଚଳାବସ୍ଥା ସୃଷ୍ଟି ହୋଇଛି ।

(କ) ଉତ୍ତର ପ୍ରଦେଶର ତେହେରି ନଦୀବନ୍ଧ ଯୋଜନା :- ଏହା ଭୂମିକମ୍ପ ପ୍ରପୀଡ଼ିତ ଅଞ୍ଚଳର ଅନ୍ତର୍ଭୁକ୍ତ ହୋଇଥିବାରୁ ଏପରି ଯୋଜନାର ବାସ୍ତବ ରୂପାୟନ ଭବିଷ୍ୟତରେ ଆତଙ୍କପ୍ରଦ ପରିସ୍ଥିତି ସୃଷ୍ଟି କରିବାର ସମ୍ଭାବନାକୁ ଏଡ଼ି ହେଉନାହିଁ । ମାତ୍ର ବିଶେଷଜ୍ଞମାନଙ୍କ ମତାନୁଯାୟୀ ଏଥର ନିର୍ମାଣ କାର୍ଯ୍ୟକୁ ଏପରି ମଜବୁତ କରାଯାଉଛି ଯେ ପ୍ରଳୟଙ୍କରୀ ଭୂମିକମ୍ପର ତୀବ୍ରତାକୁ ମଧ୍ୟ ଏହା ସହ୍ୟ କରି ପାରିବ । ଅବଶ୍ୟ, ଏଥିପାଇଁ ବିଶେଷଜ୍ଞମାନଙ୍କ ମଧ୍ୟରେ ମଧ୍ୟ ମତାନୈକ୍ୟ ପରିଲକ୍ଷିତ ହେଉଛି । ଏହାକୁ ନିର୍ମାଣ କରିବା ଦ୍ୱାରା ୨୩ଟି ଗ୍ରାମ ସମ୍ପୂର୍ଣ୍ଣ ଭାବରେ ଏବଂ ୭୨ଟି ଗ୍ରାମ ଆଂଶିକ ଭାବରେ ଜଳମଗ୍ନ ହେବ । ନୂଆ ଗଢ଼ି ଉଠୁଥିବା ତେହେରି ସହର ମଧ୍ୟ ଏହାର ପ୍ରକୋପରୁ ବାଦ ପଡ଼ିବ ନାହିଁ । ଏଥିପାଇଁ ଅନ୍ୟୂନ ୭୦,୦୦୦ ବାସିନ୍ଦା ଭିଟାମାଟିରୁ ସ୍ଥାନାନ୍ତରୀତ ହେବାକୁ ବାଧ୍ୟ ହେବେ ।

(ଖ) ଗୁଜୁରାଟ ରାଜ୍ୟର ସର୍ଦ୍ଦାର ସରୋବର ଯୋଜନା :- ଏହାକୁ କାର୍ଯ୍ୟକାରୀ କରାଯିବା ଦ୍ୱାରା ୩୭,୦୦୦ ହେକ୍ଟର ଜମି ଜଳମଗ୍ନ ହେବା ସଙ୍ଗେ ସଙ୍ଗେ ଚାରି ଲକ୍ଷ ସ୍ଥାନୀୟ ବାସିନ୍ଦାଙ୍କୁ ଅନ୍ୟତ୍ର ସ୍ଥାନଚ୍ୟୁତ କରାଯିବା ଅନୀବାର୍ଯ୍ୟ ହେବ ।

(ଗ) ମଧ୍ୟପ୍ରଦେଶର ନର୍ମଦା ନଦୀବନ୍ଧ ଯୋଜନା :- ଏହାକୁ କାର୍ଯ୍ୟକାରୀ କରାଯିବା ଦ୍ୱାରା ପ୍ରାୟ ୮୦,୦୦୦ ହେକ୍ଟର ଜମି ଜଳମଗ୍ନ ହେବ ଏବଂ ଚାରି ଲକ୍ଷରୁ ଅଧିକ ବାସିନ୍ଦାମାନଙ୍କୁ ଅନ୍ୟତ୍ର ସ୍ଥାନାନ୍ତରୀତ କରାଯିବ ।

ସୁବୃହତ୍ ନଦୀବନ୍ଧ ଯୋଜନାଗୁଡ଼ିକର ନିର୍ମାଣ ଏବଂ ଗୋଟିଏ ଗୋଟିଏ ବୃହତ୍ ନଦୀ ଜଳର ବିଭିନ୍ନ ରାଜ୍ୟ ମଧ୍ୟରେ ବିତରଣକୁ କେନ୍ଦ୍ର କରି ବରାବର ଆମ ଦେଶରେ ଅଶାନ୍ତ ଓ ଉତ୍ତେଜନାମୟ ପରିସ୍ଥିତିର ସୂତ୍ରପାତ ଘଟୁଛି । ଏଥିପାଇଁ ନ୍ୟାୟାଳୟ ଓ ଟ୍ରିବ୍ୟୁନାଲଗୁଡ଼ିକର ଆଶ୍ରୟ ନିଆଯାଉଥିଲେ ମଧ୍ୟ ବହୁ ବର୍ଷ ବ୍ୟାପୀ ଏହି ଗୁରୁତ୍ୱପୂର୍ଣ୍ଣ ସମସ୍ୟାଟିର ସନ୍ତୋଷପ୍ରଦ ସମାଧାନ ସମ୍ଭବ ହେଉନାହିଁ । ଜନ ଆନ୍ଦୋଳନର ଚାପରେ ବାରମ୍ବାର ନଦୀବନ୍ଧଗୁଡ଼ିକର ନିର୍ମାଣ ସ୍ଥଗିତ କରାଯିବା ଫଳରେ ବ୍ୟୟଭାର ଆବର୍ଦ୍ଧିତ ହେବା ହିଁ ସାର ହେଉଛି । ଜଳର ବିତରଣକୁ କେନ୍ଦ୍ର କରି ପଡ଼ୋଶୀ ରାଷ୍ଟ୍ରଗୁଡ଼ିକ ମଧ୍ୟରେ ଉପୁଜୁଥିବା କଳହକୁ ରାଜନୈତିକ କାରସାଦୀ ବଳରେ ସାମୟିକ ଭାବରେ ପ୍ରଶମିତ କରାଯାଉଛି; ମାତ୍ର ଆମ ଦେଶର ନଦୀ ଜଳର ସଂରକ୍ଷଣ ଓ ଜନକଲ୍ୟାଣକାମୀ ଉପଯୋଗକୁ ଆଞ୍ଚଳିକ ସ୍ୱାର୍ଥର ଉର୍ଦ୍ଧ୍ୱରେ ତଥା ଦୀର୍ଘମିଆଦୀ ସୂତ୍ରରେ କାର୍ଯ୍ୟକାରୀ କରାଯିବା ଭଳି କୌଣସି ନୀତି ଓ ତଦାଶ୍ରୟୀ ଯୋଜନାର ପ୍ରଣୟନ ସମ୍ଭବ ହେଉନାହିଁ ।

ଜଙ୍ଗଲାଞ୍ଚଳର ସୁରକ୍ଷା ଓ ସନ୍ତୁଳନ ପାଇଁ ସରକାର ଯେଉଁ ସଂରକ୍ଷଣକାମୀ ନୀତି ଅନୁସରଣ କରୁଛନ୍ତି ତାହା ଜନସ୍ୱାର୍ଥବିରୋଧୀ ହେଉଛି । ପର୍ଯ୍ୟାବରଣର ପ୍ରଗତି ପାଇଁ ୱାର୍ଲଡ଼ ବ୍ୟାଙ୍କ ଓ ଗ୍ଲୋବାଲ୍ ଏନ୍‌ଭାଇରନ୍‌ମେଣ୍ଟାଲ୍ ଅଥରିଟି (GEF) ଯେଉଁ ନୀତିଗୁଡ଼ିକୁ ଆନ୍ତଃରାଷ୍ଟ୍ରୀୟ ସ୍ତରରେ କାର୍ଯ୍ୟକାରୀ କରାଯିବା ପାଇଁ ପରାମର୍ଶ ଦେଉଛନ୍ତି, ଆମ ଦେଶ ତାହାକୁ ଅନୁମୋଦନ କରିଛି । ମାତ୍ର ଏହି ନୀତିକୁ କାର୍ଯ୍ୟକାରୀ କରାଯିବାର ଅନ୍ୟ ଅର୍ଥ ହେଉଛି ସ୍ଥାନୀୟ ବାସିନ୍ଦାମାନଙ୍କୁ ପ୍ରାକୃତିକ ବିଭବରାଜିଠାରୁ ଦୂରେଇ ରଖିବା । ଜଙ୍ଗଲାଞ୍ଚଳଗୁଡ଼ିକ କ୍ଷେତ୍ରରେ ରାଷ୍ଟ୍ରାୟତ୍ତ ତଥା ଜନସ୍ୱାର୍ଥବିରୋଧୀ ନୀତିଗୁଡ଼ିକର ପ୍ରଚଳନ ଫଳରେ କୌଣସି ସୁଫଳ ମିଳୁ ନାହିଁ । ଯେଉଁ ଜଙ୍ଗଲାଞ୍ଚଳର ବାସିନ୍ଦାମାନେ ଦାୟାଦିକ ସୂତ୍ରରେ ଜଙ୍ଗଲର ସୁରକ୍ଷା ଦାୟିତ୍ୱକୁ ସ୍ୱତଃସ୍ଫୂର୍ତ୍ତ ଭାବରେ ଆଦରି ନେଇଥିଲେ ଏବଂ ପ୍ରଭୂତ ଅଭିଜ୍ଞତା ବଳରେ ଜଙ୍ଗଲଜାତ ଜୈବବସ୍ତୁଗୁଡ଼ିକୁ ବ୍ୟବହାର କରି ନିଜ ନିଜର ଜୀବିକା ନିର୍ବାହ କରିବା ପୂର୍ବକ ତାହାର ପରିପୋଷଣ ଦିଗରେ ଯତ୍ନବାନ୍ ହେଉଥିଲେ ସେମାନଙ୍କୁ ସଂରକ୍ଷିତ ଜଙ୍ଗଲାଞ୍ଚଳ ଓ ଅଭୟାରଣ୍ୟଗୁଡ଼ିକଠାରୁ ସ୍ଥାନଚ୍ୟୁତ କରାଯାଉଛି । ରାଜାଜୀ ନାସନାଲ ପାର୍କ ଓ ଗିର୍ ଲାୟନ୍ ସାଙ୍କଚ୍ୟୁଆରୀଠାରେ ଏପରି କାର୍ଯ୍ୟାନୁଷ୍ଠାନକୁ କାର୍ଯ୍ୟକାରୀ କରାଯିବା ପରେ ଲକ୍ଷ୍ୟ କରାଯାଉଛି ଯେ ଏତଦ୍ୱାରା ବାସଚ୍ୟୁତ ବାସିନ୍ଦାମାନେ କୌଣସି ପ୍ରକାରେ ଉପକୃତ ହୋଇନାହାନ୍ତି । ସେମାନଙ୍କ ମଧ୍ୟରୁ କେତେକେ ସ୍ଥାନାନ୍ତରୀତ ହେବାର ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରିଛନ୍ତି । ଆଉ କେତେକ ବାସିନ୍ଦା ସ୍ଥାନଚ୍ୟୁତ ହେବା ପରେ ପାରମ୍ପରିକ ବୃତ୍ତିକୁ ଆଦରି ନେବାର ଅବକାଶ ନଥିବାରୁ ଭୂମିହୀନ ଶ୍ରମିକ ଭାବରେ ଦାରିଦ୍ର୍ୟ ପ୍ରପୀଡ଼ିତ ଜୀବନ ବିତାଉଛନ୍ତି କିମ୍ବା ପେଟ ବିକଳରେ ସହରାଞ୍ଚଳକୁ ଧନ୍ଦା ଯୋଗାଡ଼ କରିବା ପାଇଁ ପଳାଉଛନ୍ତି ।

ସରକାର ପର୍ଯ୍ୟାବରଣର ତଥା ବିଶେଷ ଭାବରେ ମୂଲ୍ୟବାନ୍ ପରିସଂସ୍ଥାଗୁଡ଼ିକର ପରିପୋଷଣ ପାଇଁ ତଥା ଦୀର୍ଘମିଆଦୀ ସୂତ୍ରରେ ଜୈବବିବିଧତାର ସଂରକ୍ଷଣ ପାଇଁ ଉଭୟ କେନ୍ଦ୍ର ଓ ରାଜ୍ୟ ସ୍ତରରେ ପରିବେଶ ଓ ଜଙ୍ଗଲ ମନ୍ତ୍ରଣାଳୟ ପ୍ରତିଷ୍ଠା କରିଛନ୍ତି । କେନ୍ଦ୍ର ସରକାରଙ୍କ କର୍ତ୍ତୃତ୍ୱାଧୀନରେ କେନ୍ଦ୍ରୀୟ ପ୍ରଦୂଷଣ ନିୟନ୍ତ୍ରକ ବୋର୍ଡ଼ (CPCB) ପ୍ରତିଷ୍ଠା କରାଯାଇଛି ଏବଂ ପ୍ରତ୍ୟେକ ରାଜ୍ୟରେ ମଧ୍ୟ ପ୍ରଦୂଷଣ ନିୟନ୍ତ୍ରକ ବୋର୍ଡ଼ଗୁଡ଼ିକୁ ଗଠନ କରାଯାଇଛି । ଏପରି ଆନୁଷ୍ଠାନିକ ବ୍ୟବସ୍ଥାଗୁଡ଼ିକୁ କାର୍ଯ୍ୟକାରୀ କରାଯିବା ଦିଗରେ ଅମଲାତନ୍ତ୍ରକୁ ଅବଶ୍ୟ ସୁଦୃଢ଼ କରାଯାଉଛି । ଜଙ୍ଗଲ ତଥା ଇତର ପ୍ରାକୃତିକ ସମ୍ପଦର ସୁରକ୍ଷା,

ସନ୍ତୁଳନ, ସଂରକ୍ଷଣ ଓ କ୍ରମୋନ୍ନତି ପାଇଁ ଶହ ଶହ ସରକାରୀ କର୍ମଚାରୀ ନିଯୁକ୍ତ ହୋଇଛନ୍ତି । କେନ୍ଦ୍ର ଓ ରାଜ୍ୟସ୍ତରୀୟ ମନ୍ତ୍ରଣାଳୟ ଆନୁକୂଲ୍ୟରେ ଏ ଦିଗରେ ବିପୁଳ ଅର୍ଥ ବ୍ୟୟ କରାଯାଉଛି । କେତେକ ଆନ୍ତଃରାଷ୍ଟ୍ରୀୟ ସଙ୍ଗଠନ ମଧ୍ୟ ଏ ଦିଗରେ ସରକାରୀ ସହଯୋଗିତା ବଳରେ ସକ୍ରିୟ ଭୂମିକା ଗ୍ରହଣ କରୁଛନ୍ତି । ମାତ୍ର ଏ ପ୍ରକାର ସର୍ବବିଧ ପ୍ରାଶାସନିକ ବ୍ୟବସ୍ଥା ବଳରେ ପ୍ରାକୃତିକ ସମ୍ବଳଗୁଡ଼ିକର ସଂରକ୍ଷଣ ତଥା ଜୈବ ବସ୍ତୁ ନିର୍ଭରଶୀଳ ଜନସାଧାରଣଙ୍କ ଦାରିଦ୍ର୍ୟ ମୋଚନ ଦିଗରେ କୌଣସି ପ୍ରଭାବଶାଳୀ ପଦକ୍ଷେପ ଗ୍ରହଣ କରିବା ସମ୍ଭବ ହେଉନାହିଁ । ଗଣତାନ୍ତ୍ରିକ ଶାସନ ପଦ୍ଧତି ପ୍ରଚଳିତ ଆମ ଦେଶରେ ରାଜନୈତିକ ଓ ପ୍ରଶାସନିକ ବ୍ୟବସ୍ଥାଗୁଡ଼ିକ ଏ ଦିଗରେ ଅପାରଗ ହୋଇଥିବା ସ୍ଥଳେ ବିଚାର ବିଭାଗର ସମୟୋଚିତ ପଦକ୍ଷେପଗୁଡ଼ିକ ହିଁ ଜନସାଧାରଣଙ୍କ ମାନସପଟରେ ଆଶାର ସଞ୍ଚାର ଘଟାଇଛି । ସେମାନେ ଜାଣି ଗଲେଣି ଯେ ସାଂପ୍ରତିକ ରାଜନୈତିକ ଓ ପ୍ରଶାସନିକ ବ୍ୟବସ୍ଥା ଅବଲମ୍ବନରେ ସ୍ଥିତାବସ୍ଥାରେ କୌଣସି ଦେଶୋପଯୋଗୀ ପରିବର୍ତ୍ତନ ଘଟିବାର ସମ୍ଭାବନା ନାହିଁ । ଦେଶର ସର୍ବୋଚ୍ଚ ନ୍ୟାୟାଳୟ ସାଂପ୍ରତିକ ପରିସ୍ଥିତିକୁ ଠିକଣା ଭାବରେ ହୃଦୟଙ୍ଗମ କରିବା ପରେ ପବ୍ଲିକ୍ ଇଣ୍ଟରେଷ୍ଟ ଲିଟିଗେସନ୍.(PIL) ଅବଲମ୍ବନରେ ଜନସାଧାରଣଙ୍କୁ ବୈୟକ୍ତିକ ବା ସାଙ୍ଗଠନିକ ମାର୍ଗରେ ନିଜ ନିଜର ଆପତ୍ତି ବା ଅଭିଯୋଗକୁ ବିଚାର ପାଇଁ ଉପସ୍ଥାପନା କରିବାର ସୁଯୋଗ ଦେଇଛନ୍ତି । ଆମ ଦେଶର ବିଚାର ବିଭାଗ ଏପରି ସଙ୍କଳ୍ପବଦ୍ଧ ମାର୍ଗରେ ପରିବେଶୀୟ ପ୍ରଦୂଷଣର ପ୍ରତିକାର ଦିଗରେ ଯେପରି କ୍ରିୟାଶୀଳ ହେଉଛନ୍ତି, ତଜ୍ଜନିତ ଇତ୍ୟବସରରେ କେତେକ ଐତିହାସିକ ନିଷ୍ପତ୍ତି ଗ୍ରହଣ କରିବା ସମ୍ଭବ ହୋଇଛି । ଅବଶ୍ୟ, କେତେକ ବୁଦ୍ଧିଜୀବୀ ମତ ବ୍ୟକ୍ତ କରୁଛନ୍ତି ଯେ, ବିଚାର ବିଭାଗ ପ୍ରଶାସନିକ ବ୍ୟାପାରରେ ହସ୍ତକ୍ଷେପ କରିବା କୌଣସି ସୁସ୍ଥ ପରମ୍ପରାର ପରିଚାୟକ ନୁହେଁ । ମାତ୍ର ରାଜନୈତିକ ନେତୃବର୍ଗ ଓ ଅମଲାତନ୍ତ୍ରର ଦୁର୍ନୀତିପରାୟଣତା, ପକ୍ଷପାତିତା ଓ ସ୍ୱାର୍ଥାନ୍ୱେଷୀ ଆଚରଣକୁ ପ୍ରତିହତ କରିବା ପାଇଁ ବିଚାର ବିଭାଗ ଭିନ୍ନ ଅନ୍ୟ କୌଣସି ବିକଳ୍ପ ବ୍ୟବସ୍ଥା ନାହିଁ । ଏହାକୁ ସମ୍ୟକ୍ ଭାବରେ ଉପଲବ୍ଧି କରିବା ପୂର୍ବକ ସୁପ୍ରିମ୍ କୋର୍ଟ ଏବେ ସରକାରୀ କର୍ତ୍ତୃପକ୍ଷଙ୍କୁ ନିଜ ନିଜ ଦାୟିତ୍ୱକୁ ଠିକଣା ଭାବରେ ନିର୍ଦ୍ଧାରିତ ସମୟ ସୀମା ମଧ୍ୟରେ କାର୍ଯ୍ୟକାରୀ କରିବାକୁ ନିର୍ଦ୍ଦେଶ ଦେଉଛନ୍ତି ଏବଂ ବିଗତ ଦୁଇ ତିନି ବର୍ଷ ହେଲା ସରକାରଙ୍କ ସ୍ୱୀକୃତିଗୁଡ଼ିକ ଯଥାବିଧି କାର୍ଯ୍ୟକାରୀ ହେଉଛି କି ନାହିଁ ଜାଣିବା ପାଇଁ ସ୍ପେସିଆଲ୍ ଅଥରିଟିଜ୍‌ଗୁଡ଼ିକ ଉପରେ ଏକ ଗୁରୁ ଦାୟିତ୍ୱ ଅର୍ପଣ କରିଛନ୍ତି ।

ସର୍ବୋଚ୍ଚ ନ୍ୟାୟାଳୟକୁ ସରକାରଙ୍କ ଦ୍ୱାରା ପ୍ରଦତ୍ତ ସ୍ୱୀକୃତି ଅନୁଯାୟୀ ଠିକଣା ଭାବରେ ବିଭିନ୍ନ ଦାୟିତ୍ୱଗୁଡ଼ିକ କାର୍ଯ୍ୟକାରୀ ହେଉଛି କି ନାହିଁ ଜାଣାଇବା ପାଇଁ ତତ୍‌ସମ୍ପର୍କରେ ପର୍ଯ୍ୟାପ୍ତ ତଥ୍ୟ ଯୋଗାଇ ଦେବା ହିଁ ହୋଇଛି ଏହି ସ୍ପେସିଆଲ୍ ଅଥରିଟିଜ୍‌ର କର୍ମସୂଚୀ ।

ତଥାପି ସର୍ବୋଚ୍ଚ ନ୍ୟାୟାଳୟଙ୍କ ନିର୍ଦ୍ଦେଶରେ ସଂପୃକ୍ତ କର୍ତ୍ତୃପକ୍ଷ ଠିକଣା ଭାବରେ ନିଜ ଦାୟିତ୍ୱ ସମ୍ପାଦନ କରୁନାହାନ୍ତି । PIL ଅବଲମ୍ବନରେ ଯେଉଁ ଅଭିଯୋଗଗୁଡ଼ିକର ଶୁଣାଣି ହେଉଛି, ତତ୍‌ସମ୍ପର୍କୀୟ ସଠିକ୍ ତଥ୍ୟ ସରକାରଙ୍କଠାରୁ ମିଳୁନାହିଁ । ଯେଉଁମାନେ ଅଭିଯୋଗ ଆଗତ କରୁଛନ୍ତି, ସେମାନଙ୍କ ପକ୍ଷରୁ ନିଯୁକ୍ତ ଆଇନଜୀବୀମାନେ ମଧ୍ୟ ବିଚାରପତିମାନଙ୍କୁ ନିର୍ଭୁଲ୍ ତଥ୍ୟ ଯୋଗାଉ ନାହାନ୍ତି । ଏଣୁ ଅନେକ କ୍ଷେତ୍ରରେ ନ୍ୟାୟାଧୀଶମାନେ କୌଣସି ବେସରକାରୀ ସେବାକରୀ ଅନୁଷ୍ଠାନ ବା ବ୍ୟକ୍ତିବିଶେଷଙ୍କ ଦ୍ୱାରା ଆଗତ ଅଭିଯୋଗକୁ ସହୃଦୟତାର ସହିତ ଶୁଣିବା ପରେ ସେଗୁଡ଼ିକର ନିରାକରଣ ଦିଗରେ ସମ୍ୟକ୍ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାକୁ ସରକାରଙ୍କୁ ପରାମର୍ଶ ଦେଉଛନ୍ତି । କେତେକ ବିଶେଷ କ୍ଷେତ୍ରରେ ପରିସ୍ଥିତିର ତୀବ୍ରତା ପରିପ୍ରେକ୍ଷୀରେ ନିର୍ଦ୍ଦିଷ୍ଟ ସମୟ-ସୀମା ମଧ୍ୟରେ ପ୍ରତିକାରମୂଳକ ବ୍ୟବସ୍ଥାଗୁଡ଼ିକୁ କାର୍ଯ୍ୟକାରୀ କରିବା ପାଇଁ ନିର୍ଦ୍ଦେଶ ଦେଉଛନ୍ତି । ମାତ୍ର ଏଗୁଡ଼ିକୁ ମଧ୍ୟ ଅନେକ କ୍ଷେତ୍ରରେ ଠିକଣା ଭାବରେ ପାଳନ କରାଯାଉ ନାହିଁ । ଆଇନକୁ ଅମାନ୍ୟ ନ କରି ମଧ୍ୟ ସଂପୃକ୍ତ କର୍ତ୍ତୃପକ୍ଷ ନିଜ ନିଜ ସ୍ୱାର୍ଥ ସାଧନ ପାଇଁ ବିଚକ୍ଷଣ କୌଶଳଗୁଡ଼ିକୁ ପ୍ରୟୋଗ କରୁଛନ୍ତି । ନିମ୍ନଲିଖିତ ଦୃଷ୍ଟାନ୍ତଗୁଡ଼ିକରୁ ଏହି ବକ୍ତବ୍ୟର ଯଥାର୍ଥତା ଅନାୟାସରେ ଉପଲବ୍ଧ ହେବ ।

କ୍ରମବର୍ଦ୍ଧମାନ ପ୍ରଦୂଷଣର ପ୍ରତିକାର ଦିଗରେ ରାଜନୈତିକ ତଥା ପ୍ରଶାସନିକ ବ୍ୟବସ୍ଥା ଅପାରଗ ହେଉଥିବାର ହୃଦୟଙ୍ଗମ କରି ଆମ ଦେଶରେ ଯେଉଁ କେତେ ଜ [illegible] ବେଶ-ସଚେତନ ବୁଦ୍ଧିଜୀବୀ ବିଚାରାଳୟର ଆଶ୍ରୟ ନେବାକୁ ଉଚିତ ମଣିଥିଲେ ସେମାନଙ୍କ ମଧ୍ୟରେ ଆଇନଜୀବୀ ଶ୍ରୀ. ଏମ୍. ସି. ମେହେତା ଏକ ପ୍ରମୁଖ ସ୍ଥାନର ଅଧିକାରୀ ହୋଇଛନ୍ତି । ସେ ପର୍ଯ୍ୟାପ୍ତ ତଥ୍ୟ ସମ୍ବଳିତ ଜନସ୍ୱାର୍ଥବିରୋଧୀ କର୍ମଗୁଡ଼ିକୁ ଯୁକ୍ତିସଙ୍ଗତ ମାର୍ଗରେ ସର୍ବୋଚ୍ଚ ନ୍ୟାୟାଳୟର ଦୃଷ୍ଟିକୁ ଆଣିବା ବ୍ୟାପାରରେ ଆମ ଦେଶରେ ଜନୈକ ପଥ ପ୍ରଦର୍ଶକ ଭାବରେ କ୍ରିୟାଶୀଳ ହୋଇଛନ୍ତି ବୋଲି କହିଲେ ସତ୍ୟର ଅପଳାପ ହେବ ନାହିଁ । ୧୯୮୫ ମସିହାରେ ଏମ୍. ସି. ମେହେତା ଦିଲ୍ଲୀ ସହରରୁ ୧୨୦୦ଟି ପ୍ରଦୂଷଣକାରୀ କାରଖାନାକୁ

ଅନ୍ୟତ୍ର ଉଠାଇନେବା ପାଇଁ ସର୍ବୋଚ୍ଚ ନ୍ୟାୟାଳୟରେ ଆବେଦନ କରିଥିଲେ । ଏହି ଆବେଦନକୁ ବିଚାର କରି ମାନ୍ୟବର ସୁପ୍ରିମ୍ କୋର୍ଟ ୧୯୯୬ ମସିହାରେ ଗୋଟିଏ ଐତିହାସିକ ନିଷ୍ପତ୍ତି ଶୁଣାଇଲେ । ନ୍ୟାୟାଧୀଶମାନେ କଡ଼ା ନିର୍ଦ୍ଦେଶ ଦେଲେ ଯେ ଏହି ପ୍ରଦୂଷଣକାରୀ କାରଖାନାଗୁଡ଼ିକୁ ତୁରନ୍ତ ଦିଲ୍ଲୀ ସହରରୁ ଉଠାଇ ନିଆଯାଉ ଏବଂ ସେମାନଙ୍କୁ ଅନ୍ୟତ୍ର କାରଖାନା ପ୍ରତିଷ୍ଠା କରିବାର ସୁଯୋଗ ଦିଆଯାଉ । ଯେଉଁ କାରଖାନାର ମାଲିକମାନେ ଏପରି ନିର୍ଦ୍ଦେଶ ମାନିବାକୁ ଅସମର୍ଥ ହେଉଛନ୍ତି, ସେମାନେ ତୁରନ୍ତ ସେଠାକାର ଉତ୍ପାଦନ-ବ୍ୟାପାରକୁ ବନ୍ଦ କରି ଦିଅନ୍ତୁ । ସମକାଳୀନ ଭାବରେ ସଂପୃକ୍ତ ନ୍ୟାୟାଧୀଶମାନେ ଏହି କାରଖାନାମାନଙ୍କର ନିଯୁକ୍ତ କର୍ମଚାରୀମାନଙ୍କ ସ୍ୱାର୍ଥ ପ୍ରତି ମଧ୍ୟ ସମୁଚିତ ନଜର ଦେଇଥିଲେ । ସେମାନେ ଜଣାଇଥିଲେ ଯେ କାରଖାନାଗୁଡ଼ିକ ସ୍ଥାନଚ୍ୟୁତ ହେବା ଅବସରରେ କିମ୍ବା ବନ୍ଦ ହୋଇଯିବା ଯୋଗୁଁ କର୍ମଚାରୀମାନଙ୍କୁ ଯଥୋଚିତ କ୍ଷତିପୂରଣ ବା କମ୍ପେନ୍‌ସେସନ୍ ଦିଆଯିବ । ଏହି ନିର୍ଦ୍ଦେଶନାମା ଜାରି ହେବାର ପ୍ରାୟ ତିନି ବର୍ଷ ପରେ ଲକ୍ଷ୍ୟ କରାଯାଉଛି ଯେ ପ୍ରାୟ ୫୦,୦୦୦ କର୍ମଚାରୀ ସଂପୃକ୍ତ କାରଖାନାର ମାଲିକମାନଙ୍କଠାରୁ କମ୍ପେନ୍‌ସେସନ୍ ପାଇବା ପାଇଁ ଅପେକ୍ଷା କରିଛନ୍ତି । ଯେଉଁ କେତେକ କ୍ଷେତ୍ରରେ କର୍ମଚାରୀମାନେ କମ୍ପେନ୍‌ସେସନ୍ ପାଇଛନ୍ତି, ତାହାର ପରିମାଣ ଅତି କମ୍ ହୋଇଛି । ପୁଣି ମୋଟ କର୍ମଚାରୀମାନଙ୍କ ମଧ୍ୟରୁ ଶତକଡ଼ା ପ୍ରାୟ ୬୦ ଭାଗ ଦୀର୍ଘ କାଳ ବ୍ୟାପୀ ଅସ୍ଥାୟୀ କର୍ମଚାରୀ ଭାବରେ କର୍ମରତ ହୋଇଥିବାରୁ ସେମାନଙ୍କ ପ୍ରତି ମାଲିକମାନେ ଭିନ୍ନ ପ୍ରକାର ଉଦାସୀନ ନୀତି ଅବଲମ୍ବନ କରିବାକୁ ଲାଭପ୍ରଦ ମଣୁଛନ୍ତି । ଲକ୍ଷ୍ୟ କରାଯାଉଛି ଯେ ଦିଲ୍ଲୀ ସହରରୁ କାରଖାନାଗୁଡ଼ିକୁ ଅନ୍ୟତ୍ର ଉଠାଇ ନିଆଯିବାର ନିଷ୍ପତ୍ତି ସଂପୃକ୍ତ କେତେକ ମାଲିକଙ୍କ ପାଇଁ ବିଶେଷ ଲାଭପ୍ରଦ ହୋଇଛି । ସେମାନେ କାରଖାନା ପ୍ରତିଷ୍ଠିତ ହୋଇଥିବା ଜମିକୁ ଏବେ ଅତୀବ ଲାଭପ୍ରଦ ମାର୍ଗରେ ବ୍ୟବହାର କରୁଥିବାର ଲକ୍ଷ୍ୟ କରାଯାଉଛି ।

ରାଜସ୍ଥାନର ବିଛରିଠାରେ ହାଇଡ୍ରୋକ୍ଲୋରିକ୍ ଅମ୍ଳ ଉତ୍ପାଦନ କରିବା ପାଇଁ ୧୯୮୭ ମସିହାରେ ଗୋଟିଏ କାରଖାନା ପ୍ରତିଷ୍ଠିତ ହୋଇଥିଲା । ଏହି କାରଖାନାରୁ ନିଷ୍କାସିତ ସିଲଭର କେମିକାଲଗୁଡ଼ିକ ଭୂଗର୍ଭୀୟ ଜଳଭଣ୍ଡାରରେ ମିଶିଯିବା ଫଳରେ ଲକ୍ଷ୍ୟ କରାଗଲା ଯେ ସେଠାକାର ସବୁ କୂପର ଜଳ ଲାଲ ବର୍ଣ୍ଣ ଧାରଣ କରିଛି । ଏହି କୂପ ଜଳ ଏଣିକି ଆଦୌ ବ୍ୟବହାରଯୋଗ୍ୟ ନ ହେବାରୁ ସେଠାକାର ବାସିନ୍ଦାମାନେ ଏହାର ପ୍ରତିକାର ବିରୋଧରେ ସ୍ୱର ଉତ୍ତୋଳନ କଲେ ।

ମାତ୍ର ଏତଦ୍ୱାରା କୌଣସି ସୁଫଳ ନ ମିଳିବାରୁ ସେମାନେ ବିଚାରାଳୟର ଆଶ୍ରୟ ନେଲେ । ୧୯୯୬ ମସିହାରେ ବିଚାରପତିମାନେ ଗୋଟିଏ ନିର୍ଦ୍ଦେଶନାମା ଜରିଆରେ ଘୋଷଣା କଲେ ଯେ ଏହି କାରଖାନାଟିକୁ ତୁରନ୍ତ ବନ୍ଦ କରିଦିଆଯାଉ । ନ୍ୟାୟାଳୟର ଏ ପ୍ରକାର ନିଷ୍ପତ୍ତି ସତ୍ତ୍ୱେ ଗ୍ରାମବାସୀମାନେ କୌଣସି ପ୍ରକାରେ ଉପକୃତ ହେଲେ ନାହିଁ । ସେଠାକାର ଭୂଗର୍ଭୀୟ ଜଳ ଏବେ ମଧ ପୂର୍ବବତ୍ ପ୍ରଦୂଷିତ ହେଉଛି । ନ୍ୟାୟାଳୟର ନିଷ୍ପତ୍ତି ଅନୁଯାୟୀ ସରକାରୀ କର୍ତ୍ତୃପକ୍ଷ କୌଣସି ଫଲୋ-ଅପ୍ କ୍ରିୟାଶୀଳତା କାର୍ଯ୍ୟକାରୀ କରୁନାହାନ୍ତି । ସର୍ବୋପରି ଏହି ଦୂଷିତ ଜଳ ବ୍ୟବହାର କରି ବ୍ୟାଧିଗ୍ରସ୍ତ ହୋଇଥିବା ଗ୍ରାମବାସୀମାନଙ୍କୁ କୌଣସି ପ୍ରକାର କ୍ଷତିପୂରଣ ବା କମ୍ପେନ୍‌ସେସନ୍ ଯୋଗାଇ ଦିଆଯାଉ ନାହିଁ ।

ଆନ୍ଧ୍ରପ୍ରଦେଶର ମେଡ଼କ ଜିଲ୍ଲାର ପାଟାନଚେରୁଠାରେ ଗୋଟିଏ ବୈଷୟିକ କେନ୍ଦ୍ର ବା ଇଣ୍ଡଷ୍ଟ୍ରିଆଲ୍ ଇଷ୍ଟେଟ୍ ପ୍ରତିଷ୍ଠା କରାଯାଇଛି । ଏଠାରେ ଅନେକଗୁଡ଼ିଏ କାରଖାନା ପ୍ରତିଷ୍ଠିତି ହୋଇଛି । ଏହି କାରଖାନାଗୁଡ଼ିକରୁ ନିଷ୍କାସିତ ବିଷାକ୍ତ ଆବର୍ଜନା ଶହ ଶହ ଏକର ଜମିକୁ ପ୍ରଦୂଷିତ କରୁଛି ଏବଂ ଏଠାକାର ପାନୀୟ ଜଳଭଣ୍ଡାରଗୁଡ଼ିକ ମଧ ଏଥିପାଇଁ ପ୍ରଦୂଷିତ ହେଉଛି । ଏପରି ପ୍ରଦୂଷଣର ପ୍ରତିକାର ପାଇଁ ସ୍ଥାନୀୟ ବାସିନ୍ଦାମାନେ ବାରମ୍ବାର ଅଭିଯୋଗ କରିବା ପରେ କୌଣସି ସୁଫଳ ନ ମିଳିବାରୁ ସେମାନେ ବାଧ ହୋଇ ନ୍ୟାୟ ପାଇବା ଆଶାରେ ସୁପ୍ରିମ୍ କୋର୍ଟରେ କୃପାଭିକ୍ଷୁ ହେଲେ । ମାନ୍ୟବର ସୁପ୍ରିମ୍ କୋର୍ଟ ୧୯୯୬ ମସିହା, ମେ ମାସ ୧୦ ତାରିଖରେ ଗୋଟିଏ ଇଣ୍ଟ୍ରିମ୍ ଅର୍ଡ଼ର ଘୋଷଣା କଲେ । ଏତଦ୍ୱାରା ସୂଚାଇ ଦିଆଗଲା ଯେ ସ୍ଥାନୀୟ ବାସିନ୍ଦାମାନଙ୍କୁ ଶୁଦ୍ଧ ପାନୀୟ ଜଳ ଯୋଗାଇ ଦିଆଯିବାର ବ୍ୟବ ା କରାଯାଉ ଏବଂ ପ୍ରଦୂଷିତ ଜମିର ମାଲିକମାନଙ୍କୁ ଉପଯୁକ୍ତ ପରିମାଣର କ୍ଷତିପୂରଣ ଦିଆଯାଉ । ଅବଶ୍ୟ, ସୁପ୍ରିମ୍ କୋର୍ଟ [illegible] ାଟିକୁ ବନ୍ଦ କରିଦେବା ଭଳି କଠୋର ନିଷ୍ପତ୍ତି ଗ୍ରହଣ କରି ନଥିଲେ । ଏପରି ନିଷ୍ପତ୍ତି ପରିପ୍ରେକ୍ଷୀରେ ରାଜ୍ୟ ସରକାର ଶୁଦ୍ଧ ପାନୀୟ ଜଳ ୍ାଗାଇ ଦେବା ପାଇଁ ଯେଉଁ ବ୍ୟବସ୍ଥା କାର୍ଯ୍ୟକାରୀ କରିଛନ୍ତି, ତାହା ଆଦୌ ସନ୍ତୋଷପ୍ରଦ ହୋଇ ନଥିବାର ଜଣାପଡ଼ିଛି । ଆବର୍ଜନା ସୃଷ୍ଟିକାରୀ ଶିଳ୍ପାନୁଷ୍ଠାନଗୁଡ଼ିକୁ ପ୍ରଦୂଷ ପ୍ରତିକାର ଉଦ୍ଦେଶ୍ୟରେ ରାଜ୍ୟ ସରକାର କେଉଁ ପ୍ରକାର ନିର୍ଦ୍ଦେଶ ଦେଉଛନ୍ତି, ତାହା ଭବିଷ୍ୟତରେ ହିଁ ଜଣା ପଡ଼ିବ ।

ଉଲ୍ଲିଖିତ ସଂକ୍ଷିପ୍ତ ଆଲୋଚନାରୁ ସ୍ପଷ୍ଟ ଜଣାପଡୁଛି ଯେ ସମୟକ୍ରମେ ଶିଳ୍ପାଞ୍ଚଳର ପ୍ରଗତି ସହିତ ତାଳ ମିଳାଇ ଜନସାଧାରଣ କ୍ରମବର୍ଦ୍ଧମାନ ପରିବେଶୀୟ ପ୍ରଦୂଷଣ ତଥା ପର୍ଯ୍ୟାବରଣୀୟ ଦୁର୍ଗତି ସମ୍ବନ୍ଧରେ ମଧ୍ୟ ସଚେତନ ହେଲେଣି । ବେସରକାରୀ ସେବାକାରୀ ପ୍ରତିଷ୍ଠାନଗୁଡ଼ିକ ଏଦିଗରେ କାଳକ୍ରମେ ଅଧିକରୁ ଅଧିକ ସକ୍ରିୟ ଭୂମିକା ଗ୍ରହଣ କରୁଛନ୍ତି । ଆମ ପରିବେଶର ସନ୍ତୁଳନ ଓ ସୁରକ୍ଷା ପାଇଁ ସରକାର ଯେଉଁ ନୀତିଗୁଡ଼ିକୁ ପ୍ରଣୟନ କରୁଛନ୍ତି ସେଗୁଡ଼ିକୁ ଅମାନ୍ୟ କରୁଥିବା ଶିଳ୍ପପତିମାନଙ୍କ ବିରୋଧରେ ନ୍ୟାୟାଳୟମାନଙ୍କରେ ଅଭିଯୋଗଗୁଡ଼ିକର ସଂଖ୍ୟା ଦିନକୁ ଦିନ ବଢ଼ିବାରେ ଲାଗିଛି । ଏଥିରୁ ସ୍ପଷ୍ଟ ଜଣାପଡୁଛି ଯେ ଜାତୀୟ ପ୍ରଗତି ସହିତ ତାଳ ମିଳାଇ ପରିବେଶୀୟ ପ୍ରଗତିର ପ୍ରତିକାର ପାଇଁ ଏଣିକି ଜନସାଧାରଣ ସରକାରୀ କର୍ତ୍ତୃପକ୍ଷଙ୍କ ଉପରେ କ୍ରମବର୍ଦ୍ଧମାନ ଚାପ ପ୍ରୟୋଗ କରିବେ । ଜନମତର ପ୍ରବର୍ତ୍ତନା ତଥା ନ୍ୟାୟାଳୟଗୁଡ଼ିକର ସମୟୋଚିତ ନିର୍ଦ୍ଦେଶ ବଳରେ ରାଜନୈତିକ ଓ ପ୍ରଶାସନିକ ବ୍ୟବସ୍ଥାଗୁଡ଼ିକ ନିଜ ନିଜ କର୍ମାଭିମୁଖ୍ୟ ଓ ଆନୁଷ୍ଠାନିକ କ୍ରିୟାଶୀଳତାକୁ ଶୁଭଙ୍କରୀ ରୂପ ଦେବାକୁ ବାଧ୍ୟ ହେବେ ।



# ୫

## ଭବିଷ୍ୟତର କର୍ମସୂଚୀ :

### ସହଯୋଗିତାମୂଳକ ପ୍ରଶାସନ

### [PARTICIPATORY GOVERNANCE]

ଆମେ ଜାଣୁ ଯେ ଶିଳ୍ପୋନ୍ନତ ରାଷ୍ଟ୍ରଗୁଡ଼ିକ ହିଁ ପରିବେଶୀୟ ପ୍ରଦୂଷଣର ସୃଷ୍ଟିକର୍ତ୍ତା । ଶିଳ୍ପାୟନ ଅବଲମ୍ବନରେ ଜାତୀୟ ପ୍ରଗତି ହାସଲ କରିବା ପାଇଁ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ଅବଦାନଗୁଡ଼ିକୁ ଅପରିଣାମଦର୍ଶୀ, ଲାଭପ୍ରଦ ଓ ପ୍ରତିଦ୍ୱନ୍ଦିତାମୂଳକ ଭାବରେ ସୁଦୀର୍ଘ କାଳ ବ୍ୟାପୀ କାର୍ଯ୍ୟକାରୀ କରାଯିବାର ପରିଣତି ସ୍ୱରୂପ ଏବେ ପୃଥିବୀ ବକ୍ଷରେ ପରିବେଶୀୟ ପ୍ରଦୂଷଣ ଏପରି ଉଦ୍‌ବେଗଜନକ ପରିସ୍ଥିତି ସୃଷ୍ଟି କରିଛି । ଏହି ଶତାବ୍ଦୀର ମଧ୍ୟଭାଗଠାରୁ ସ୍ୱାଧୀନତା ପ୍ରାପ୍ତି ପରେ ଏସିଆ, ଆଫ୍ରିକା ଓ ଲାଟିନ୍ ଆମେରିକାର ବିକାଶଶୀଳ ରାଷ୍ଟ୍ରଗୁଡ଼ିକ ପାଶ୍ଚାତ୍ୟ ଢାଞ୍ଚା ଅନୁସରଣ କରି ଶିଳ୍ପାୟନର ହାରକୁ ତ୍ୱରାନ୍ୱିତ କରାଇଦେବାକୁ ଯତ୍ନବାନ୍ ହେବା ଅବସରରେ ପରିବେଶକୁ ପ୍ରଦୂଷିତ କରୁଛନ୍ତି । ଯେଉଁମାନେ ଏଥିପାଇଁ ଦାୟୀ ସେମାନେ ଅର୍ଥ ଓ ସାମରିକ ଶକ୍ତି ବଳରେ ସଂପ୍ରତି ପୃଥିବୀ ବକ୍ଷରେ ଶକ୍ତିଶାଳୀ ରାଷ୍ଟ୍ର ଭାବରେ ମୁଣ୍ଡ ଟେକିଛନ୍ତି । ଆନ୍ତଃରାଷ୍ଟ୍ରୀୟ ବାଣିଜ୍ୟ କ୍ଷେତ୍ରରେ ସେମାନେ ବିଚକ୍ଷଣ କୌଶଳଗୁଡ଼ିକୁ ପ୍ରୟୋଗ କରି ପୃଥିବୀର ବଜାରମାନଙ୍କରେ ନିଜ ନିଜ ଦେଶଗୁଡ଼ିକର ଶିଳ୍ପଜାତ ଦ୍ରବ୍ୟର ବହୁଳ କାଟତି ପାଇଁ ବିଭିନ୍ନ ପ୍ରକାର କୌଶଳ ପ୍ରୟୋଗ କରୁଛନ୍ତି । ସମକାଳୀନ ଭାବରେ ସେମାନେ ପୃଥିବୀର ମୋଟ ପ୍ରାକୃତିକ ବିଭବରାଜିର ବିପୁଳାଂଶକୁ ବ୍ୟବହାର କରି ନିଜ ନିଜ ଜୀବନ ଧାରଣର ଗୁଣାତ୍ମକ ମାନକୁ ଇତ୍ୟବସରରେ ବିକାଶଶୀଳ ରାଷ୍ଟ୍ରର ବାସିନ୍ଦାମାନଙ୍କ ତୁଳନାରେ ବହୁଗୁଣିତ କରାଇ ପାରିଛନ୍ତି । ଏହି ଦେଶଗୁଡ଼ିକରେ ଜୀବନ ଧାରଣର ନ୍ୟୂନତମ ଚାହିଦା ପୂରଣ ପାଇଁ ଜନସାଧାରଣଙ୍କୁ ଜଞ୍ଜାଳଗ୍ରସ୍ତ ଜୀବନ ଯାପନ କରିବାକୁ ପଡୁନାହିଁ । ଏପରି ଅର୍ଥନୈତିକ ସ୍ୱଚ୍ଛଳତା ହାସଲ କରିବା ପରେ ଏବେ ଏହି ଦେଶଗୁଡ଼ିକ ପରିବେଶୀୟ ପ୍ରଦୂଷଣର ପ୍ରତିକାର ପାଇଁ ଆଧୁନିକ

ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ଅବଦାନଗୁଡ଼ିକୁ ସହଜରେ ବ୍ୟବହାର କରି ପାରୁଛନ୍ତି । ପରିବେଶୀୟ ପ୍ରଦୂଷଣର ପ୍ରତିକାର ପାଇଁ ପ୍ରଣୀତ ଆଇନଗୁଡ଼ିକୁ ଏହି ଦେଶମାନଙ୍କରେ ଏପରି କଡ଼ାକଡ଼ି ଭାବରେ ପାଳନ କରାଯାଉଛି ଯେ ପ୍ରଦୂଷଣକାରୀମାନଙ୍କୁ ପ୍ରଦୂଷଣର ତୀବ୍ରତା ଅନୁପାତରେ ବିଭିନ୍ନ ପ୍ରକାର କଠୋର ଶାସ୍ତି ଦିଆଯାଉଛି । ଏଣୁ ଅନେକ ପ୍ରଦୂଷଣକାରୀ ବ୍ୟାବସାୟିକ ପ୍ରତିଷ୍ଠାନ ନିଜ ନିଜ ଦେଶରେ ପ୍ରତିଷ୍ଠିତ ତଥା ପୁରୁଣା ଟେକ୍‌ନୋଲଜିଗୁଡ଼ିକ ଦ୍ୱାରା କ୍ରିୟାଶୀଳ କାରଖାନାଗୁଡ଼ିକୁ ବିକାଶଶୀଳ ରାଷ୍ଟ୍ରମାନଙ୍କରେ ପୁନଃ ପ୍ରତିଷ୍ଠା କରିବାର ପ୍ରଯତ୍ନ ଅବ୍ୟାହତ ରଖିଛନ୍ତି । ମାନବୀୟ ସଭ୍ୟତା ଓ ସଂସ୍କୃତିର ଏପରି ଘଡ଼ିସନ୍ଧି ମୁହୂର୍ତ୍ତରେ ବିକାଶଶୀଳ ରାଷ୍ଟ୍ରଗୁଡ଼ିକ ଅର୍ଥନୈତିକ ପ୍ରଗତି ସାଧନ ପାଇଁ ଯେଉଁ ପ୍ରକାରେ ବହୁବିଧ ଶିଳ୍ପର ସମୃଦ୍ଧି ସାଧନ କରୁଛନ୍ତି, ତଜ୍ଜନିତ ପରିବେଶର ପ୍ରଦୂଷଣ ଦିନକୁ ଦିନ ଆବର୍ଦ୍ଧିତ ହେଉଛି । ଏଣୁ ଆମ ଦେଶର ସାମାଜିକ ଜୀବନରେ ଏହା ଅଶାନ୍ତି ଓ ଉତ୍ତେଜନାର ସୂତ୍ରପାତ ଘଟାଇଛି । ସାମାଜିକ ପ୍ରଗତି ଓ ଅର୍ଥନୈତିକ ପ୍ରଗତି ମଧ୍ୟରେ ସନ୍ତୁଳନ ରକ୍ଷା କରିବା ସମ୍ଭବ ହେଉ ନାହିଁ । ଅର୍ଥନୈତିକ ପ୍ରଗତି ସହ ଜଡ଼ିତ ଶିଳ୍ପପତି ଓ ବ୍ୟବସାୟୀମାନେ ପାରିପାର୍ଶ୍ୱିକ ପରିବେଶର ପ୍ରଦୂଷଣ ପ୍ରତି ଭ୍ରୂକ୍ଷେପ ନ କରି ଲାଭପ୍ରଦ ଉତ୍ପାଦନ-ପ୍ରକ୍ରିୟାଗୁଡ଼ିକୁ କ୍ରିୟାଶୀଳ କରାଇବା ଫଳରେ ଏପରି ପରିସ୍ଥିତି ସୃଷ୍ଟି ହେଉଛି । ପୁଣି, ଜାତୀୟ ଉନ୍ନୟନକାମୀ ବ୍ୟାପାରଗୁଡ଼ିକ ସହିତ ଜନସାଧାରଣଙ୍କୁ ପ୍ରତ୍ୟକ୍ଷଭାବରେ ଜଡ଼ିତ କରାଯାଉ ନଥିବାରୁ ବିପୁଳସଂଖ୍ୟକ ଜୈବ ବସ୍ତୁ ନିର୍ଭରଶୀଳ ବାସିନ୍ଦା ଆୟକାରୀ ଧନ୍ଦା ଖୋଜି ପାଇବାରୁ ବଞ୍ଚିତ ହେବା ସଙ୍ଗେ ସଙ୍ଗେ ପର୍ଯ୍ୟାବରଣୀୟ ଦୁର୍ଗତି ଯୋଗୁଁ ଜୀବନ ଧାରଣର ନ୍ୟୂନତମ ଚାହିଦା ପୂରଣ କରିବାକୁ ମଧ୍ୟ ଅସମର୍ଥ ହେଉଛନ୍ତି । ପର୍ଯ୍ୟାବରଣୀୟ ଦୁର୍ଗତି ଓ ଅର୍ଥନୈତିକ ପ୍ରଗତି ବାବଦରେ ଆମ ଦେଶରେ ଯେଉଁ ବିଚିତ୍ର ପରିସ୍ଥିତି ସୃଷ୍ଟି ହୋଇଛି, ତାହାର ଉତ୍ପୀଡ଼ନ ଯୋଗୁଁ ସାମାଜିକ ନ୍ୟାୟ ପ୍ରତିଷ୍ଠା କରିବାର ପଥ ଅବରୁଦ୍ଧ ହୋଇଛି । ଉଲ୍ଲିଖିତ ସଂକ୍ଷିପ୍ତ ଆଲୋଚନାରୁ ସ୍ପଷ୍ଟ ବୁଝି ହେଉଛି ଯେ, ଜନସାଧାରଣ ଆଉ ଏ ପ୍ରକାର ପରିସ୍ଥିତିକୁ ବରଦାସ୍ତ କରିବେ ନାହିଁ । ରାଜନୈତିକ ଓ ପ୍ରଶାସନିକ କ୍ଷେତ୍ରରେ ପର୍ଯ୍ୟାବରଣୀୟ ଦୁର୍ଗତିକୁ ରୋକିବା ସଙ୍ଗେ ସଙ୍ଗେ ଦାରିଦ୍ର୍ୟ ମୋଚନ ଦିଗରେ ବିଭିନ୍ନ ପ୍ରକାର ବିଶୃଙ୍ଖଳା, ଦୁର୍ନୀତି ଓ ବ୍ୟଭିଚାର ପରିଲକ୍ଷିତ ହେଉଥିବାରୁ ଜନସାଧାରଣ ନିଜ ନିଜ ବଞ୍ଚି ରହିବାର ମୌଳିକ ଅଧିକାର ସାବ୍ୟସ୍ତ କରିବା ପାଇଁ ନ୍ୟାୟାଳୟର ଆଶ୍ରୟ ନେବାକୁ ବାଧ୍ୟ ହେଲେଣି । ଏଣିକି ଏହି ବ୍ୟାପାରରେ ବେସରକାରୀ ସ୍ୱେଚ୍ଛାସେବୀ ଅନୁଷ୍ଠାନ ଓ ଦୁର୍ଭାଗ୍ୟଜନକ ପରିସ୍ଥିତିର ସମ୍ମୁଖୀନ ହୋଇଥିବା ବ୍ୟକ୍ତିବିଶେଷ ସକ୍ରିୟ ଭୂମିକା

ଗ୍ରହଣ କରିବା ପୂର୍ବକ ବିପର୍ଯ୍ୟସ୍ତ ପରିସ୍ଥିତିର ମୁକାବିଲା କରିବା ପାଇଁ ସରକାରଙ୍କ ଉପରେ ଅଧିକରୁ ଅଧିକ ଚାପ ପ୍ରୟୋଗ କରିବେ ଏବଂ ସରକାରୀ କର୍ତ୍ତୃପକ୍ଷ ସେମାନଙ୍କ ନ୍ୟାଯ୍ୟ ଦାବୀକୁ ଆଉ ଉପେକ୍ଷା କରି ପାରିବେ ନାହିଁ । କାରଣ, ଜନସାଧାରଣ ଏଣିକି ଭୋଟ ବଳରେ ଏପରି ଅପାରଗ ଓ ଉଦାସୀନ ସରକାରଙ୍କୁ ପ୍ରତ୍ୟାଖ୍ୟାନ କରିବାକୁ ବାଧ ହେବେ ।

ଏଣୁ ଭବିଷ୍ୟତରେ ପରିବେଶୀୟ ପ୍ରଦୂଷଣର ପ୍ରତିକାର ପାଇଁ କେଉଁ ପନ୍ଥା ଅବଲମ୍ବନ କରାଯିବ ? ଆମେ ଆଶା କରିବା ନାହିଁ ଯେ ଦାରିଦ୍ର୍ୟ ପ୍ରପୀଡ଼ିତ ଆମ ଦେଶରେ ଶିଳ୍ପୋନ୍ନତ ରାଷ୍ଟ୍ରଗୁଡ଼ିକ ଭଳି ହଠାତ୍ ପ୍ରଦୂଷଣର ପ୍ରତିକାର ପାଇଁ ବହୁ ବ୍ୟୟସାପେକ୍ଷ ଯନ୍ତ୍ର-କୌଶଳ ବା ଉପରକରଣଗୁଡ଼ିକୁ ବ୍ୟବହାର କରାଯିବ । କାରଣ ଏହା ସହଜରେ ବୁଝି ହେଉଛି ଯେ ପ୍ରାୟତଃ ଗଣ-ଦାରିଦ୍ର୍ୟ ପ୍ରପୀଡ଼ିତ ଆମ ଦେଶରେ ଏପରି କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବା ପାଇଁ ଆମର ଆର୍ଥିକ ସମ୍ବଳ ନାହିଁ । ଭବିଷ୍ୟତରେ ଅର୍ଥନୈତିକ ଅବସ୍ଥା ସ୍ୱଚ୍ଛଳ ହେବା ଅନୁକ୍ରମରେ ଆମ ଦେଶର ଉତ୍ପାଦକମାନେ ମଧ ସମୁନ୍ନତ ବିଜ୍ଞାନସମ୍ମତ ଓ ବ୍ୟୟସାପେକ୍ଷ କୌଶଳଗୁଡ଼ିକୁ ବ୍ୟବହାର କରିବାକୁ କୁଣ୍ଠା ବୋଧ କରିବେ ନାହିଁ । ମାତ୍ର ବର୍ତ୍ତମାନର ପରିସ୍ଥିତିରେ ଉପଯୁକ୍ତ ମୂଲ୍ୟବୋଧଗୁଡ଼ିକ ବଳରେ ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥାକୁ ଠିକଣା ଆନୁଷ୍ଠାନିକ ଉଦ୍ୟମଗୁଡ଼ିକ ବଳରେ ନିଷ୍ଠାପର ଭାବରେ କ୍ରିୟାଶୀଳ କରାଯିବା ସମ୍ଭବ ହେଲେ ହିଁ ଆମେ ଏ ପ୍ରକାର ଦୁର୍ଗତି କବଳରୁ ନିଜ ନିଜକୁ ରକ୍ଷା କରିପାରିବା । ସର୍ବାଦୌ ଏଥିପାଇଁ ଆବଶ୍ୟକ ହେଉଛି ଉତ୍ତମ ଗଣତନ୍ତ୍ର (Good democracy) ଓ ଉତ୍ତମ ପ୍ରଶାସନ (Good governance) ।

ଆମ ଦେଶ ଗୋଟିଏ ଗୌରବାବହ ସାଂସ୍କୃତିକ ପରମ୍ପରାସମ୍ପନ୍ନ ବିଶାଳ ରାଷ୍ଟ୍ର । ଏହି ସୁବିସ୍ତୃତ ରାଷ୍ଟ୍ରର ବିଭିନ୍ନ ଅଞ୍ଚଳରେ ଲୋକାଚାର, ସଂସ୍କୃତି, ମୃତ୍ତିକା, ଜଳବାୟୁ, ଅର୍ଥନୈତିକ ଅବସ୍ଥା ଓ ପାରମ୍ପରିକ ଟେକ୍‌ନୋଲଜି ପ୍ରଭୃତି ସ୍ୱତନ୍ତ୍ର ପ୍ରକାରର ହୋଇଛି । ପ୍ରତ୍ୟେକ ଅଞ୍ଚଳର ସ୍ୱାତନ୍ତ୍ର୍ୟ ପରିପ୍ରେକ୍ଷୀରେ ସେହି ଅଞ୍ଚଳର ଜରୁରୀକାଳୀନ ପ୍ରଗତି ସାଧନ ପାଇଁ ସୁଚିନ୍ତିତ ଯୋଜନାଗୁଡ଼ିକୁ ଦୀର୍ଘମିଆଦୀ ଓ ସ୍ୱଳ୍ପମିଆଦୀ ସୂତ୍ରରେ କାର୍ଯ୍ୟକାରୀ କରାଇବାର ଜରୁରୀକାଳୀନ ଆବଶ୍ୟକତା ଉପୁଜୁଛି । ପ୍ରତ୍ୟେକ ଅଞ୍ଚଳର ପ୍ରଗତି ସାଧନ ପାଇଁ ସ୍ୱତନ୍ତ୍ର ପ୍ରକାରର ଟେକ୍‌ନୋଲଜି ଓ ପରିଚାଳନା-ପଦ୍ଧତିର ଚାହିଦାକୁ ବିଚାରକୁ ନେଇ ଯଦି ସେହି ଅଞ୍ଚଳର ପ୍ରଗତି ସାଧନ ଅବସରରେ ପର୍ଯ୍ୟାବରଣୀୟ ବିଭବରାଜିକୁ ଉନ୍ନୟନମୂଳକ ପ୍ରକ୍ରିୟାଗୁଡ଼ିକ ସହିତ ଅର୍ଥସୂଚକ ମାର୍ଗରେ ସାମିଲ କରାଯାଏ, ତାହାହେଲେ ଅର୍ଥନୈତିକ ପରିବେଶର ସୁରକ୍ଷା ଓ ପରିପୋଷଣ ଦିଗରେ ଅନ୍ତରାୟ ସୃଷ୍ଟି

ହେବାର ଅବକାଶ ରହିବ ନାହିଁ । ଏପରି ବିକେନ୍ଦ୍ରୀକୃତ ଉନ୍ନୟନ ପ୍ରକ୍ରିୟାଗୁଡ଼ିକୁ କାର୍ଯ୍ୟକାରୀ କରାଇବା ପାଇଁ ଆମ ପ୍ରଶାସନିକ ବ୍ୟବସ୍ଥାରେ ବ୍ୟାପକ ପରିବର୍ତ୍ତନ ଘଟାଇବାର ଆବଶ୍ୟକତାକୁ ଆଉ ଏଡ଼ାଇ ହେବ ନାହିଁ । ଜନସାଧାରଣଙ୍କୁ ଶିକ୍ଷିତ କରାଇବା ଦ୍ୱାରା ତଥା ବିଭିନ୍ନ ବୈଷୟିକ ବ୍ୟାପାରଗୁଡ଼ିକର କାର୍ଯ୍ୟକାରିତା ପାଇଁ ସେମାନଙ୍କୁ ବିଭିନ୍ନ ଆୟକାରୀ ଧନ୍ଦା ସମ୍ପର୍କରେ ଦୀକ୍ଷିତ କରାଇବା ଦ୍ୱାରା ହିଁ ସେମାନେ ଉନ୍ନୟନମୂଳକ ପ୍ରକ୍ରିୟାଗୁଡ଼ିକ ସହିତ ଅର୍ଥସୂଚକ ମାର୍ଗରେ ଜଡ଼ିତ ହୋଇ ପାରିବେ । ସମକାଳୀନ ଭାବରେ ସେମାନେ ହୃଦୟଙ୍ଗମ କରିବେ ଯେ ଅର୍ଥନୈତିକ ପ୍ରଗତି ପାଇଁ ପରିବେଶକୁ ଦୁର୍ଗତିର ସମ୍ମୁଖୀନ କରାଇବା ଦ୍ୱାରା ସେମାନଙ୍କ ଭବିଷ୍ୟତ କେବଳ ଅନ୍ଧକାରମୟ ହୋଇଯିବା ହିଁ ସାର ହେବ । କ୍ଷମତାର ବିକେନ୍ଦ୍ରୀକରଣ ବଳରେ ଆଞ୍ଚଳିକ ସ୍ୱାତନ୍ତ୍ର୍ୟ ପରିପ୍ରେକ୍ଷୀରେ ପ୍ରତ୍ୟେକ ଅଞ୍ଚଳର ପ୍ରଗତି ସାଧନ ପାଇଁ ଯଦି ପ୍ରଶାସନିକ ବ୍ୟବସ୍ଥାକୁ ଠିକଣା କର୍ମାଭିମୁଖ୍ୟର ଅନୁବର୍ତ୍ତୀ କରାଯାଏ ଏବଂ ସ୍ଥାନୀୟ ବାସିନ୍ଦାଙ୍କ ଚାହିଦା ଓ ରୁଚିକୁ ସମ୍ମାନ ପ୍ରଦର୍ଶନ କରାଯିବା ପୂର୍ବକ ସେମାନଙ୍କୁ ବିଭିନ୍ନ ଆୟକାରୀ ଧନ୍ଦାରେ ଆତ୍ମନିୟୋଗ କରିବାର ସାମର୍ଥ୍ୟ ଯୋଗାଇ ଦିଆଯାଏ, ତାହାହେଲେ ସାମାଜିକ ପ୍ରଗତି ଓ ଅର୍ଥନୈତିକ ପ୍ରଗତି ମଧ୍ୟରେ ଅସନ୍ତୁଳନ ସୃଷ୍ଟି ହେବାର ଅବକାଶ ରହିବ ନାହିଁ ।

ଉତ୍ତମ ପ୍ରଶାସନର ଅନ୍ୟତମ ବୈଶିଷ୍ଟ୍ୟ ହେଉଛି ପ୍ରଗତିମୂଳକ କାର୍ଯ୍ୟଗୁଡ଼ିକ ସହିତ ପରିବେଶୀୟ ବିଭବରାଜିକୁ ଅର୍ଥସୂଚକ ମାର୍ଗରେ ସାମିଲ କରାଇବା । ପରିବେଶୀୟ ବିଭବରାଜିର ଠିକଣା ମୂଲ୍ୟାୟନ କରାଯିବା ସମ୍ଭବ ହେଲେ ଶିଳ୍ପଜାତ ଓ କୃଷିଜାତ ଦ୍ରବ୍ୟଗୁଡ଼ିକର ମୂଲ୍ୟ ନିର୍ଦ୍ଧାରଣ ବ୍ୟାପାରଟିକୁ ଠିକଣା ଭାବରେ କାର୍ଯ୍ୟକାରୀ କରାଯାଇ ପାରିବ । ବିଭିନ୍ନ ପ୍ରକାର ଉତ୍ପାଦନ ସହ ଜଡ଼ିତ ବ୍ୟକ୍ତିମାନେ ଜଳ, ବାୟୁ, ମୃତ୍ତିକା, ଖଣିଜ ଦ୍ରବ୍ୟ, ଜୀବାବଶେଷପ୍ରସୂତ ଇନ୍ଧନଗୁଡ଼ିକର ସୁସଂଯତ ତଥା ମିତବ୍ୟୟୀ ବ୍ୟବହାର ଦିଗରେ ସଚେତନ ହେବାକୁ ବାଧ ହେବେ । ଯେଉଁମାନେ ଏହି ବ୍ୟାପାରଟିକୁ ଠିକଣା ଭାବରେ ପରିଚାଳନା କରିବେ ନାହିଁ ସେମାନଙ୍କୁ ପରିବେଶୀୟ ବିଭବରାଜିର ବେପରବାୟ ବିନିଯୋଗ ପାଇଁ ଉପଯୁକ୍ତ କ୍ଷତି ପୂରଣ ଦେବାକୁ ବାଧ କରାଯିବ ଏବଂ ସ୍ଥଳ ବିଶେଷରେ ସେମାନଙ୍କ ପ୍ରତି କଠୋର ଦଣ୍ଡ ବିଧାନ କରାଯିବ ।

ପ୍ରାକୃତିକ ସମ୍ବଳର ପରିଚାଳନା ବ୍ୟାପାରଟିକୁ ସ୍ଥାନୀୟ ଜନସାଧାରଣଙ୍କ ପରାମର୍ଶ ଓ ପ୍ରତ୍ୟକ୍ଷ ସହଯୋଗ ବଳରେ କାର୍ଯ୍ୟକାରୀ କରାଯିବା ଦ୍ୱାରା ସରକାର ଜନସାଧାରଣଙ୍କୁ ଯଥାର୍ଥ କ୍ଷମତାର୍ପଣ (Empowerment) କରିପାରିବେ ଏବଂ ସେମାନେ ଏହି କ୍ଷମତା ବଳରେ ହିଁ ପରିବେଶୀୟ ବିଭବରାଜିର ସୁରକ୍ଷା, ସନ୍ତୁଳନ

ଓ ପରିପୋଷଣ ଦିଗରେ ସ୍ୱତଃସ୍ଫୂର୍ତ୍ତ ଭାବରେ କର୍ମପ୍ରବଣ ହେବେ । କାରଣ, ଏତଦ୍ୱାରା ହିଁ କେବଳ ସେମାନଙ୍କ ଅର୍ଥନୈତିକ ପ୍ରଗତିର ପଥ ସୁଗମ୍ୟ ହେବ ।

ଆଲୋଚ୍ୟ ରିପୋର୍ଟରେ ସୂଚାଇ ଦିଆଯାଇଛି ଯେ ଆମ ଦେଶରେ ଗଣତାନ୍ତ୍ରିକ ଶାସନ ପଦ୍ଧତି ଓ ଶିଳ୍ପୋଦ୍ୟୋଗ ଭିତ୍ତିକ ପରମ୍ପରା ଅତି ପ୍ରାଚୀନ । ଏପରି ସୁସ୍ଥ ପରମ୍ପରାର ସ୍ଥାୟିତ୍ୱ ଯୋଗୁଁ ହିଁ ବିଭିନ୍ନ ଯୁଗର ଭାରତୀୟମାନେ ନିଜ ନିଜ ସ୍ଥିତାବସ୍ଥାରେ କ୍ରମୋନ୍ନତି ଘଟାଇବା ଦିଗରେ ଯତ୍ନବାନ୍ ହୋଇଛନ୍ତି । କୃଷିପ୍ରଧାନ ଭାରତବର୍ଷରେ ଅତୀତରେ ପରିବେଶୀୟ ସନ୍ତୁଳନ ଓ ପର୍ଯ୍ୟାବରଣର ସୁରକ୍ଷା ପାଇଁ ବହୁବିଧ ଶୁଭକାରୀ ପଦକ୍ଷେପଗୁଡ଼ିକୁ କାର୍ଯ୍ୟକାରୀ କରାଯିବା ଯୋଗୁଁ ହିଁ ଭାରତୀୟ ସଭ୍ୟତା ଓ ସଂସ୍କୃତିର ବୈଶିଷ୍ଟ୍ୟ ସୁଦୀର୍ଘ ୫,୦୦୦ ବର୍ଷରୁ ଊର୍ଦ୍ଧ୍ୱକାଳ ବ୍ୟାପୀ ପୃଥିବୀ ବକ୍ଷରେ ପ୍ରତିଷ୍ଠା ଅର୍ଜନ କରିଛି । ଭାରତୀୟମାନେ ଦାୟାଦିକ ସୂତ୍ରରେ ନିଜ ନିଜ ପ୍ରକୃତ ଅଭିଜ୍ଞତା ବଳରେ ଅବଧାରିତ ହୋଇଛନ୍ତି ଯେ ପର୍ଯ୍ୟାବରଣୀୟ ଦାରିଦ୍ର୍ୟର ଅପସାରଣ ସମ୍ଭବ ହେଲେ ଅର୍ଥନୈତିକ ଦାରିଦ୍ର୍ୟର ଯଥାର୍ଥ ସମାଧାନ ହୋଇପାରିବ । ସ୍ୱାଧୀନତା-ଉତ୍ତର ଭାରତବର୍ଷରେ ବିଗତ ଦୁଇ ଦଶନ୍ଧି ମଧ୍ୟରେ ଗ୍ରାମାଞ୍ଚଳମାନଙ୍କରେ ଏ ଦିଗରେ ଯେଉଁ ପଥ ପ୍ରଦର୍ଶନକାରୀ ଉଦ୍ୟମଗୁଡ଼ିକୁ ବାସ୍ତବ ରୂପ ଦିଆଯାଇଛି, ତତ୍ ସମ୍ପର୍କୀୟ ସୂଚନା ଉଲ୍ଲିଖିତ ଆଲୋଚନାରେ ପ୍ରଦତ୍ତ ହୋଇଛି । ଜାତିର ଜନକ ମହାତ୍ମା ଗାନ୍ଧୀ ଦାରିଦ୍ର୍ୟର ଅପସାରଣ ପାଇଁ ଯେଉଁ ପ୍ରକାର ମୌଳିକ ଶିକ୍ଷାଦୀକ୍ଷାର ପ୍ରସାର ଘଟାଇବା ପାଇଁ ଚାହିଁଥିଲେ, ତାହାକୁ ସାରା ଭାରତବର୍ଷରେ ଠିକଣା ଭାବରେ କାର୍ଯ୍ୟକାରୀ କରାଯିବା ଦ୍ୱାରା ହିଁ ଏ ଦେଶରୁ ନିରକ୍ଷରତା, କୁସଂସ୍କାର ଓ ଦାରିଦ୍ର୍ୟର ଅପସାରଣ ଘଟିବା ସଙ୍ଗେ ସଙ୍ଗେ ପର୍ଯ୍ୟାବରଣର ପରିପୋଷଣ ହୋଇପାରିବ । ଆଧୁନିକ ଯୁଗର ତଥ୍ୟ ଟେକ୍‌ନୋଲଜି ଓ ଟେଲିଯୋଗାଯୋଗ୍ ବ୍ୟବସ୍ଥାଗୁଡ଼ିକ ଏହି ବ୍ୟାପାରକୁ ଅତି ସୁବିଧାରେ ପରିଚାଳନା କରିବା ଦିଗରେ ସହାୟକ ହେବେ । ଆମ ଦେଶର ଯେଉଁ କ୍ଷମତାଶାଳୀ ଓ ବିତ୍ତଶାଳୀ ବ୍ୟକ୍ତିମାନେ ଶିଳ୍ପୋନ୍ନତ ରାଷ୍ଟ୍ରଗୁଡ଼ିକର ବିତ୍ତଶାଳୀ ବାସିନ୍ଦାମାନଙ୍କ ପଦାଙ୍କ ଅନୁସରଣ କରି ଏ ଦେଶରେ ଶୋଷଣପ୍ରବଣ, ଦୁର୍ନୀତିଗ୍ରସ୍ତ ଓ ସୁବିଧାବାଦୀ ଆଚରଣ ପ୍ରଦର୍ଶନ କରିବା ପୂର୍ବକ ପର୍ଯ୍ୟାବରଣୀୟ ଦୁର୍ଗତିକୁ ଆବର୍ଦ୍ଧିତ କରାଉଛନ୍ତି, ସେମାନେ ମଧ୍ୟ ଗାନ୍ଧିଜୀଙ୍କ ଦ୍ୱାରା ପ୍ରଦତ୍ତ ପରାମର୍ଶଗୁଡ଼ିକୁ ଗ୍ରହଣ କରିବା ଦ୍ୱାରା ନିଜେ ନିଜେ ସୁଖଶାନ୍ତିରେ ରହିବା ସଙ୍ଗେ ସଙ୍ଗେ ଅନ୍ୟମାନଙ୍କ ପାଇଁ ଆୟକାରୀ ଧନ୍ଦାଗୁଡ଼ିକୁ ଯୋଗାଇ ପାରିବେ । ଏତଦ୍ୱାରା ସେମାନେ ଲାଭଖୋର୍ ମନୋବୃତ୍ତି ପ୍ରବର୍ତ୍ତିତ ଖଳ ଚକ୍ରାନ୍ତ ବଳରେ ଅମଲାତନ୍ତ୍ର ଓ ରାଜନୈତିକ ନେତୃବର୍ଗଙ୍କ ହାତ ଚିକ୍କଣ କରିବା ପୂର୍ବକ

ପର୍ଯ୍ୟାବରଣକୁ ପ୍ରଦୂଷିତ କରିବାର ଅବକାଶ ରହିବ ନାହିଁ : " We not only have to learn how to be good 'Gandhian in poverty' but also a good 'Gandhian in wealth'." ।

ଗ୍ରାମାଞ୍ଚଳରେ ପ୍ରାକୃତିକ ସମ୍ପଳର ସୁପରିଚାଳନା ବ୍ୟାପାରରେ ନିକଟ ଅତୀତରେ ଯେଉଁ ସଫଳତା ମିଳିଛି ତାହାକୁ ବିଚାର କରିବା ଦ୍ୱାରା ଆମେ ଅନାୟାସରେ ବୁଝି ପାରୁଛୁ ଯେ ଜନସାଧାରଣଙ୍କୁ ପରିବେଶର ଶତ୍ରୁ ଭାବରେ ବିଚାର କରିବାର କୌଣସି ଯଥାର୍ଥତା ନାହିଁ । ପରିବେଶର ସଂରକ୍ଷଣ ସମ୍ପର୍କରେ ବିଚାର କରିବା ବେଳେ ଆମେ ଜୈବ ବସ୍ତୁ ନିର୍ଭରଶୀଳ ବାସିନ୍ଦାମାନଙ୍କ ସ୍ୱାର୍ଥକୁ ମଧ୍ୟ ବିଚାରକୁ ନେବା ବାଞ୍ଛନୀୟ । ସେମାନଙ୍କ ସ୍ୱାର୍ଥ ସଂରକ୍ଷିତ ହୋଇ ପାରିବା ଭଳି ବ୍ୟାପାରଗୁଡ଼ିକୁ ସେମାନଙ୍କ ସହଯୋଗ ବଳରେ କାର୍ଯ୍ୟକାରୀ କରାଯିବା ସମ୍ଭବ ହେଲେ ପର୍ଯ୍ୟାବରଣୀୟ ଦୁର୍ଗତିର ପଥ ରୋଧ ହୋଇପାରିବ ।

ଏହି ସମସ୍ତ ଘଟଣାପ୍ରବାହକୁ ବିଚାର କରିବା ଦ୍ୱାରା ଜଣା ପଡୁଛି ଯେ ନିମ୍ନଲିଖିତ କାର୍ଯ୍ୟାନୁଷ୍ଠାନଗୁଡ଼ିକୁ ଠିକଣା ଭାବରେ କାର୍ଯ୍ୟକାରୀ କରାଯିବା ସମ୍ଭବ ହେଲେ ଆମ ଦେଶରୁ ପର୍ଯ୍ୟାବରଣର ଦୁର୍ଗତି ଅପସାରିତ ହେବା ସଙ୍ଗେ ସଙ୍ଗେ ଆମ ଦେଶର ବାସିନ୍ଦାମାନେ ଆଗାମୀ ଶତାବ୍ଦୀରେ ଗୋଟିଏ ଜ୍ଞାନାଶ୍ରୟୀ ସମାଜରେ ସୁଖଶାନ୍ତିରେ ବସବାସ କରିବାକୁ ସମର୍ଥ ହେବେ । ଉତ୍ତରୋତ୍ତର ସମୃଦ୍ଧି ସାଧିତ ହେଉଥିବା ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା ବଳରେ ଆମ ଦାୟାଦମାନେ ଏ ଦେଶର ପର୍ଯ୍ୟାପ୍ତ ଜୈବ-ବିବିଧତାକୁ ବହୁବିଧ ଜନହିତକାରୀ ମାର୍ଗରେ ନିୟୋଜିତ କରିବାକୁ ସମର୍ଥ ହେବେ ।

***ଦେଶୋପଯୋଗୀ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା (Good Science) :** ଆମ ଦେଶର ବିଭିନ୍ନ ଅଞ୍ଚଳର ପରିବେଶୀୟ ସ୍ୱାତନ୍ତ୍ର୍ୟ ପରିପ୍ରେକ୍ଷୀରେ ପ୍ରତ୍ୟେକ ଅଞ୍ଚଳର ପ୍ରଦୂଷଣର ତୀବ୍ରତାରେ କ୍ରମହ୍ରାସ ଘଟାଇବା ଉଦ୍ଦେଶ୍ୟରେ ଗବେଷଣା ଓ ପ୍ରଗତିମୂଳକ (R & D) ବ୍ୟାପାରଗୁଡ଼ିକ ପ୍ରତି ବିଶେଷ ପ୍ରାଧାନ୍ୟ ଆରୋପ କରାଯିବା ବାଞ୍ଛନୀୟ । ବଣ୍ୟ ଜନ୍ତୁମାନଙ୍କର ସ୍ୱାସ୍ଥ୍ୟର ସୁରକ୍ଷା ଓ ରକ୍ଷଣାବେକ୍ଷଣ, ବିଷ-ବିଜ୍ଞାନ (Toxicology), ମହାମାରୀ-ବିଜ୍ଞାନ (Epidem-iology) ପ୍ରଭୃତି ସର୍ବବିଧ କ୍ଷେତ୍ରରେ ଉପଜାତ ସମସ୍ୟାଗୁଡ଼ିକର ସମାଧାନ ପାଇଁ ବିଜ୍ଞାନସମ୍ମତ ତଥା ସହଜ ବ୍ୟବହାରଯୋଗ୍ୟ କୌଶଳଗୁଡ଼ିକୁ ଉଦ୍‌ଭାବନ କରିବାକୁ ହେବ । ଅନେକ ଅଞ୍ଚଳରେ ଲକ୍ଷ୍ୟ କରାଯାଉଛି ଯେ, ଜଙ୍ଗଲଗୁଡ଼ିକ ଠିକଣା ଭାବରେ ଉଧେଇ ପାରୁ ନାହାନ୍ତି । ବିଭିନ୍ନ କାରଣ ଯୋଗୁଁ ଉଦ୍ଭିଦଗୁଡ଼ିକ ବହୁବିଧ ବ୍ୟାଧିର ଶିକାର ହେଉଛନ୍ତି । ଜଙ୍ଗଲର ସୁପରିଚାଳନାକେନ୍ଦ୍ରିକ ଏପରି

ସମସ୍ୟାଗୁଡ଼ିକର ସମାଧାନ ପାଇଁ ଗବେଷଣା ଓ ପ୍ରଗତିମୂଳକ ବ୍ୟାପାରଗୁଡ଼ିକୁ ମଧ ତ୍ୱରାନ୍ୱିତ କରାଯିବା ବାଞ୍ଛନୀୟ । ଦୁଃଖର କଥା ଯେ ସରକାରୀ କର୍ତ୍ତୃପକ୍ଷ ଖାଦ୍ୟର ସୁରକ୍ଷା ଓ ବୈଷୟିକ ପ୍ରଗତି ଦିଗରେ ଯେପରି ଗୁରୁତ୍ୱ ଆରୋପ କରୁଛନ୍ତି, ପର୍ଯ୍ୟାବରଣର ସୁରକ୍ଷା ଦିଗରେ ତଦନୁପାତିକ ଗୁରୁତ୍ୱ ଆରୋପିତ ହେଉନାହିଁ । ଅତୀତର ଅଭିଜ୍ଞତାରୁ ଶିକ୍ଷା ଲାଭ କରି ଆମ ଦେଶର ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା ବିଶେଷଜ୍ଞମାନେ ଏହି ବିଶାଳ ଦେଶର ବିଭିନ୍ନ ଅଞ୍ଚଳର ପର୍ଯ୍ୟାବରଣୀୟ ସମସ୍ୟାରାଜିର ସମାଧାନ ଦିଗରେ ସ୍ୱତନ୍ତ୍ର କୌଶଳଗୁଡ଼ିକୁ ଉଦ୍‌ଭାବନ କରି ପାରିଲେ ଆମ ଦେଶ ପର୍ଯ୍ୟାବରଣୀୟ ଦୁର୍ଗତି କବଳରୁ ମୁକ୍ତ ହୋଇ ପାରିବ ।

*ସାମାଜିକ ନ୍ୟାୟ ପ୍ରତିଷ୍ଠା (Concern for Equity) : ପରିବେଶୀୟ ପଦୂଷଣର ପ୍ରତିକାର ବାହାନାରେ ଏବେ ନିଃସମ୍ବଳ ବାସିନ୍ଦାମାନଙ୍କ ପ୍ରତି ଶୋଷଣପ୍ରବଣ ନୀତି ଅନୁସୃତ ହେଉଛି । ରାଜନୈତିକ ନେତୃବର୍ଗ, ଅମଲାତନ୍ତ୍ର, ଶିଳ୍ପପତି ଓ ଇତର ଉପଭୋଗୀ ଗୋଷ୍ଠୀର ବାସିନ୍ଦାମାନେ ବିଭିନ୍ନ ପ୍ରକାର ବାହାନା ପ୍ରଦର୍ଶନ କରି ପରିବେଶୀୟ ବିଭବରାଜିକୁ ଲୁଣ୍ଠନ କରୁଥିବାବେଳେ ନିଃସମ୍ବଳ ବାସିନ୍ଦାମାନଙ୍କୁ ଏଗୁଡ଼ିକଠାରୁ ଦୂରେଇ ରଖିବାର ଅପଚେଷ୍ଟା ଅବ୍ୟାହତ ରହିଛି । ସ୍ୱଳ୍ପସଂଖ୍ୟକ ବାସିନ୍ଦାଙ୍କର ଏପରି ଘୃଣ୍ୟ ଆଚରଣକୁ ଆଉ ଏ ଦେଶର ବିପୁଳସଂଖ୍ୟକ ବାସିନ୍ଦା ବରଦାସ୍ତ କରିବେ ନାହିଁ । ପ୍ରାକୃତିକ ବିଭବରାଜିର ସୁପରିଚାଳନା ଓ ସୁଷମ ବିତରଣ ବଳରେ ଯେପରି ଗ୍ରାମାଞ୍ଚଳ ଓ ସହରାଞ୍ଚଳ ନିର୍ବିଶେଷରେ ଆମ ଦେଶର ସବୁ ଶ୍ରେଣୀର ବାସିନ୍ଦା ଉପକୃତ ହୋଇପାରନ୍ତି, ତଥା କ୍ଷମତାର୍ପଣ ବଳରେ ସବୁ ଶ୍ରେଣୀର ବାସିନ୍ଦା ଏହାର ପରିପୋଷଣ ଓ ସମୃଦ୍ଧି ସାଧନ ଦିଗରେ ଯତ୍ନବାନ୍ ହେବା ପୂର୍ବକ ନିଜ ନିଜ ପାଇଁ ଆୟକାରୀ ଧନ୍ଦା ଯୋଗାଡ଼ କରି ପାରନ୍ତି, ସେ ଦିଗରେ ବିଶେଷ ଧ୍ୟାନ ଦେବା ସମୟୋପଯୋଗୀ ତଥା ଜରୁରୀ ବୋଧ ହେଉଛି । ଏହା ଯଦି ସମ୍ଭବ ନ ହୁଏ, ତାହାହେଲେ ଦାରିଦ୍ର୍ୟର ଉତ୍କଟ ତାଡ଼ନା ଯୋଗୁଁ ଏବଂ ଅତି ସୀମିତ ସଂଖ୍ୟକ ବାସିନ୍ଦାଙ୍କ ପ୍ରାଚୁର୍ଯ୍ୟର ଅଭିଶାପ ଯୋଗୁଁ ଆମ ଦେଶର ପର୍ଯ୍ୟାବରଣୀୟ ଦୁର୍ଗତି ନିଶ୍ଚିତ ଭାବରେ ଦିନକୁ ଦିନ କ୍ରମବର୍ଦ୍ଧମାନ ରୂପ ଧାରଣ କରିବ ।

*ଉତ୍ତମ ମୂଲ୍ୟବୋଧଗୁଡ଼ିକର ପ୍ରତିଷ୍ଠା (Good Values) : ଆମ ଦେଶର ସବୁ ଶ୍ରେଣୀର ଲୋକେ ଏକବିଂଶ ଶତାବ୍ଦୀରେ ସୁଖଶାନ୍ତିମୟ ଜୀବନ ଯାପନ କରିବା ପାଇଁ ଜନସମାଜରେ ନିମ୍ନସୂଚିତ ମୂଲ୍ୟବୋଧଗୁଡ଼ିକର ପ୍ରତିଷ୍ଠା ଏକାନ୍ତ ଜରୁରୀ ବୋଧ ହେଉଛି । ଆମ ଦେଶର ବାସିନ୍ଦାମାନେ ଉପଯୁକ୍ତ

ଶିକ୍ଷା ଦୀକ୍ଷା ବଳରେ ମିଳୁଥିବା ସୁବିଧା ଓ ସୁଯୋଗଗୁଡ଼ିକର ସଦୁପଯୋଗ କରିବାକୁ ସମର୍ଥ ହେଲେ ଆମ ଦେଶରୁ ଦାରିଦ୍ର୍ୟର ଅପସାରଣ ସମ୍ଭବ ହେବ । ମାତ୍ର ଏପରି କର୍ମପ୍ରବଣତାକୁ ସମସ୍ତଙ୍କ ହିତସାଧନକାରୀ ମାର୍ଗରେ କାର୍ଯ୍ୟକାରୀ କରାଇବା ପାଇଁ ଯେଉଁ ଜୀବନାଦର୍ଶର ଚାହିଦା ଏକାନ୍ତ ଅବଶ୍ୟକ ହେଉଛି, ତାହାର ପ୍ରତିଷ୍ଠା ଦିଗରେ ଆମ୍ଭମାନଙ୍କୁ ଜରୁରୀକାଳୀନ ପଦକ୍ଷେପଗୁଡ଼ିକୁ ଯଥାଶୀଘ୍ର ସାରାଦେଶରେ ଯଥାବିଧି କାର୍ଯ୍ୟକାରୀ କରାଇବାକୁ ହେବ ।

- ପ୍ରକୃତି ପ୍ରତି ଶ୍ରଦ୍ଧା ଓ ସମ୍ମାନ;
- ସାଂସ୍କୃତିକ ବିବିଧତା ପ୍ରତି ସମ୍ମାନ;
- ଦରିଦ୍ର ବ୍ୟକ୍ତିମାନଙ୍କ ପ୍ରତି ସହଯୋଗିତାମୂଳକ ଓ ସମ୍ବେଦନଶୀଳ ମନୋଭାବ; ସେମାନଙ୍କ ପ୍ରଭୂତ ଅଭିଜ୍ଞତା ଓ କାର୍ଯ୍ୟଦକ୍ଷତାର ବାସ୍ତବ ରୂପାୟନ ପାଇଁ ସେମାନଙ୍କ ପ୍ରତି କ୍ଷମତାର୍ପଣ;
- ସାମାଜିକ ନ୍ୟାୟ ପ୍ରତିଷ୍ଠା ପ୍ରତି ଅଗ୍ରାଧିକାର : ପୁରୁଷ ଓ ମହିଳା ନିର୍ବିଶେଷରେ ସମସ୍ତଙ୍କ ଅର୍ଥନୈତିକ, ସାଂସ୍କୃତିକ ଓ ସାମାଜିକ ସମସ୍ୟାଗୁଡ଼ିକର ସମାଧାନ ଦିଗରେ ଗୁରୁତ୍ୱାରୋପ; ବ୍ୟକ୍ତିତ୍ୱ ତଥା କାର୍ଯ୍ୟଦକ୍ଷତାରେ ଅଭିବୃଦ୍ଧି ପାଇଁ ସମସ୍ତଙ୍କୁ ଏକାଭଳି ସୁବିଧା ଓ ସୁଯୋଗ ପ୍ରଦାନ କରିବା ବ୍ୟାପାରରେ ନିରପେକ୍ଷ ଆଚରଣ;
- ଉନ୍ନୟନମୂଳକ ପ୍ରକ୍ରିୟାଗୁଡ଼ିକ ସହିତ ଅଂଶୀଦାର ହୋଇ ପାରିବାର ମୌଳିକ ଅଧିକାର : ଶିକ୍ଷା ଦୀକ୍ଷା ଓ ସମୟୋଚିତ ପରାମର୍ଶ ବଳରେ ଉନ୍ନୟନମୂଳକ ବ୍ୟାପାରଗୁଡ଼ିକ ସହିତ ସ୍ଥାନୀୟ ବାସିନ୍ଦାମାନଙ୍କୁ ଜଡ଼ିତ କରାଇବା ଦିଗରେ ପ୍ରଶାସନିକ ଓ ପରିଚାଳନାଗତ ବ୍ୟବସ୍ଥାଗୁଡ଼ିକର କର୍ମାଭିମୁଖ୍ୟରେ ଶୁଭକାରୀ ପରିବର୍ତ୍ତନ ।





# ବେସରକାରୀ ସେବାକାରୀ ସଂଗଠନଗୁଡ଼ିକର ଗୁରୁତ୍ୱପୂର୍ଣ୍ଣ ଭୂମିକା

ସ୍ୱାଧୀନତା-ଉତ୍ତର ଆମ ଦେଶର ପର୍ଯ୍ୟାବରଣୀୟ ଦୁର୍ଗତିର ଧାରା ଓ ତୀବ୍ରତାର ପ୍ରତିକାର ଦିଗରେ ସରକାରୀ କର୍ତ୍ତୃପକ୍ଷଙ୍କୁ ଯଥାବିଧି କର୍ମପ୍ରବଣ କରାଇବା ଉଦ୍ଦେଶ୍ୟରେ ତଥା ଆମ ଦେଶର ଜନସାଧାରଣଙ୍କୁ ଏ ଦିଗରେ ସଚେତନ କରାଇବା ସଙ୍ଗେ ସଙ୍ଗେ ପରିବେଶୀୟ ଅଧୋଗତି ବିରୋଧରେ ସୁସ୍ଥ ଜନମତ ସୃଷ୍ଟି କରିବା ଉଦ୍ଦେଶ୍ୟରେ ଆମ ଦେଶର କେତେକ ବ୍ୟକ୍ତିବିଶେଷ ଓ କତିପୟ ବେସରକାରୀ ସେବାକାରୀ ଅନୁଷ୍ଠାନ ପଥପ୍ରଦର୍ଶନକାରୀ ତଥା ଅଭିନନ୍ଦନୀୟ ପଦକ୍ଷେପଗୁଡ଼ିକୁ କାର୍ଯ୍ୟକାରୀ କରାଉଛନ୍ତି । ହିମାଳୟ ପର୍ବତମାଳାର ତଳି ଅଞ୍ଚଳରେ ଜଙ୍ଗଲାଞ୍ଚଳର ଉଚ୍ଛେଦକୁ ରୋକିବା ପାଇଁ ତଥା ଭୂମିକମ୍ପର ଆଶଙ୍କା ଥିବା ଅଞ୍ଚଳରେ ସୁବୃହତ୍ ନଦୀବନ୍ଧ ଯୋଜନାଗୁଡ଼ିକୁ ନିର୍ମାଣ ନ କରିବା ପାଇଁ ସୁନ୍ଦରଲାଲ ବହୁଗୁଣା ଓ ଚଣ୍ଡୀ ପ୍ରସାଦ ଭଟ୍ଟ ବିଚକ୍ଷଣ ସାଙ୍ଗଠନିକ କାର୍ଯ୍ୟଦକ୍ଷତା ପ୍ରଦର୍ଶନ କରିଛନ୍ତି । ପରିବେଶୀୟ ପ୍ରଦୂଷଣର ପ୍ରତିକାର ଦିଗରେ ପ୍ରଶାସନିକ ଅପାରଗତା ସମ୍ପର୍କରେ ସର୍ବୋଚ୍ଚ ନ୍ୟାୟାଳୟର ଦୃଷ୍ଟି ଆକର୍ଷଣ କରିବା ଏବଂ ନ୍ୟାୟସଙ୍ଗତ ମାର୍ଗରେ ପ୍ରତିକାରମୂଳକ ପଦକ୍ଷେପଗୁଡ଼ିକୁ କାର୍ଯ୍ୟକାରୀ କରାଇବା ବ୍ୟାପାରରେ ବିଶିଷ୍ଟ ଆଇନଜୀବୀ ଶ୍ରୀ ଏମ୍. ସି. ମେହେତାଙ୍କ ପଥ ପ୍ରଦର୍ଶନକାରୀ ଉଦ୍ୟମ ବିଶେଷ ଫଳପ୍ରଦ ହୋଇଛି । ଆମ ଦେଶର ବିଶିଷ୍ଟ ବୈଜ୍ଞାନିକ ଓ ଜନପ୍ରିୟ ବିଜ୍ଞାନ ସାହିତ୍ୟର ରଚୟିତା ଶ୍ରୀ ମାଧବ ଗାଡ଼ଗିଲ ପର୍ଯ୍ୟାବରଣୀୟ ଦୁର୍ଗତିକୁ ରୋକିବା ଦିଗରେ ନିଜ ଜ୍ଞାନ ଓ ଅଭିଜ୍ଞତାର ସଦୁପଯୋଗ ବଳରେ ଅନୁକୂଳ ବୌଦ୍ଧିକ ପରିବେଶ ସୃଷ୍ଟି କରିବା ବ୍ୟାପାରରେ ଅସାମାନ୍ୟ କୃତିତ୍ୱ ପ୍ରଦର୍ଶନ କରିଛନ୍ତି । ଏହି ବ୍ୟାପାରରେ ସମଧର୍ମୀ ବୈଜ୍ଞାନିକ ଓ ସୁପ୍ରଶାସକ ଟି. ଏନ୍. ଖୋସୁଙ୍କ ବୌଦ୍ଧିକ ଉଦ୍ୟମ ମଧ୍ୟ ଆନ୍ତଃରାଷ୍ଟ୍ରୀୟ ସ୍ତରରେ ଉଚ୍ଚ ପ୍ରଶଂସିତ ହୋଇଛି । ବନ୍ଦନାଶିବ, ମେଧା ପାଟକର ଓ ବାବା ଆମ୍ତେ ପ୍ରମୁଖ ପରିବେଶ-

ଅନୁରାଗୀ ସମାଜସେବକ ଓ ସମାଜସେବିକାମାନେ ନିଜ ନିଜ ବୌଦ୍ଧିକତା, ମହାନୁଭବତା ଓ ସାଙ୍ଗଠନିକ କର୍ମପ୍ରବଣତା ବଳରେ ତଥା ସ୍ଥାନୀୟ ଜନସାଧାରଣଙ୍କ ସହଯୋଗ ବଳରେ ପର୍ଯ୍ୟାବରଣୀୟ ଦୁର୍ଗତିକୁ ରୋକିବା ବ୍ୟାପାରରେ ଫଳପ୍ରଦ ଜନ-ଆନ୍ଦୋଳନର ଜାଗରଣ ଘଟାଇବାକୁ ସମର୍ଥ ହୋଇଛନ୍ତି । ପ୍ରାସଙ୍ଗିକତା ପରିପ୍ରେକ୍ଷୀରେ ଏଠାରେ ସବୁ ପରିବେଶ-ଅନୁରାଗୀ ବ୍ୟକ୍ତିମାନଙ୍କ କୃତିତ୍ୱ ସମ୍ପର୍କରେ ସୂଚନା ପ୍ରଦାନ କରିବା ଏହି ସଂକ୍ଷିପ୍ତ ଆଲୋଚନାର ଅଭିପ୍ରାୟ ନୁହେଁ, ଏତଦ୍ୱାରା ଚୁମ୍ବକୀୟ ମାର୍ଗରେ ଏଠାରେ ଏତିକି ମାତ୍ର ସୂଚାଇ ଦେବାର ପ୍ରୟାସ ହୋଇଛି ଯେ ଆମ ଦେଶର ବିପୁଳ ସଂଖ୍ୟକ ଜନସାଧାରଣଙ୍କ ସ୍ୱାର୍ଥ ସଂରକ୍ଷଣ ପାଇଁ ପରିବେଶର ସୁରକ୍ଷା ଓ ମୂଲ୍ୟବାନ ପରିସଂସ୍ଥାଗୁଡ଼ିକର (Ecosystem) ପରିପୋଷଣର ଗୁରୁତ୍ୱକୁ ସମ୍ୟକ୍ ଭାବରେ ହୃଦୟଙ୍ଗମ କରି ଆମ ଦେଶର ସମାଜସେବକ, ପରିବେଶ-ବିଜ୍ଞାନୀ, ଆଇନଜୀବୀ ଓ ଇତର ବୁଦ୍ଧିଜୀବୀମାନେ ପ୍ରତିକାରମୂଳକ ପଦକ୍ଷେପ ଗ୍ରହଣ କରିବା ବ୍ୟାପାରରେ ପାରଦର୍ଶିତା ପ୍ରଦର୍ଶନ କଲେଣି । ପରିବେଶର ସୁରକ୍ଷା ଓ ସନ୍ତୁଳନ ପାଇଁ ଇତର ଦେଶମାନଙ୍କରେ ଯେଉଁ ଜନ ଆନ୍ଦୋଳନର ସୂତ୍ରପାତ ଘଟିଛି, ଆମ ଦେଶରେ ମଧ୍ୟ ନିଜ ଦେଶର ସ୍ୱାତନ୍ତ୍ର୍ୟ ପରିପ୍ରେକ୍ଷୀରେ ଏହି ଆନ୍ଦୋଳନକୁ ଜନହିତକାରୀ ମାର୍ଗରେ ପରିଚାଳନା କରିବା ପାଇଁ ଉପଯୁକ୍ତ ସଙ୍ଗଠକ ଓ ପରିଚାଳକମାନଙ୍କର ଆବିର୍ଭାବ ଘଟିଛି ଏବଂ ଭବିଷ୍ୟତରେ ଏମାନଙ୍କ ସଂଖ୍ୟା ବହୁଗୁଣିତ ହେବାର ନିଶ୍ଚିତ ସମ୍ଭାବନା ରହିଛି ।

ଆମ ଦେଶ ଭଳି ଗୋଟିଏ ବିଶାଳ ରାଷ୍ଟ୍ରର ଆଞ୍ଚଳିକ ସ୍ୱାତନ୍ତ୍ର୍ୟ ପରିପ୍ରେକ୍ଷୀରେ ପରିବେଶୀୟ ପ୍ରଦୂଷଣ ଓ ପର୍ଯ୍ୟାବରଣୀୟ ଦୁର୍ଗତିର ପ୍ରତିକାର ପାଇଁ ସ୍ୱାଧୀନତା-ଉତ୍ତର କାଳରେ ଦେଶର ବିଭିନ୍ନ ଅଞ୍ଚଳରେ ବହୁ ବେସରକାରୀ ସେବାକାରୀ ଅନୁଷ୍ଠାନ (NGOs) ବେଶ୍ ସକ୍ରିୟ ହୋଇଛନ୍ତି । ଏମାନେ ସ୍ଥାନୀୟ ଜନସାଧାରଣଙ୍କ ସହଯୋଗ ବଳରେ, ସେଠାରେ ସୁଲଭ୍ୟ ବିଭିନ୍ନ ଶ୍ରେଣୀର ବୁଦ୍ଧିଜୀବୀମାନଙ୍କ ପରାମର୍ଶ ବଳରେ ତଥା ରାଷ୍ଟ୍ରୀୟ ଓ ଆନ୍ତଃରାଷ୍ଟ୍ରସ୍ତରୀୟ ପ୍ରବୀଣ ବିଶେଷଜ୍ଞମାନଙ୍କ ପରାମର୍ଶ ବଳରେ ସମୟୋଚିତ ପ୍ରତିକାରମୂଳକ ପଦକ୍ଷେପଗୁଡ଼ିକୁ ଯଥାବିଧି କାର୍ଯ୍ୟକାରୀ କରାଇବା ପାଇଁ ପରାମର୍ଶ ଦେଉଛନ୍ତି ଏବଂ ଆବଶ୍ୟକ ସ୍ଥଳେ ଜନ-ଆନ୍ଦୋଳନର ସୂତ୍ରପାତ ଘଟାଉଛନ୍ତି । ଆମ ଦେଶରେ ପରିଚାଳିତ ଏ ରୂପ ଘଟଣାପ୍ରବାହ ସହିତ ପ୍ରତ୍ୟକ୍ଷ ଭାବରେ ଜଡ଼ିତ ହେବା ସଙ୍ଗେ ସଙ୍ଗେ ସାରା ଦେଶର ଜନସାଧାରଣଙ୍କୁ ଏହି ଗୁରୁତ୍ୱପୂର୍ଣ୍ଣ ବ୍ୟାପାର ସମ୍ପର୍କରେ ସଚେତନ କରାଇବା ପାଇଁ, ଇତର ସମଧର୍ମୀ ଅଞ୍ଚଳମାନଙ୍କର

ବାସିନ୍ଦାମାନଙ୍କୁ କୌଣସି ଗୋଟିଏ ଅଞ୍ଚଳର ଫଳପ୍ରଦ କ୍ରିୟାଶୀଳତା ସମ୍ପର୍କରେ ଅବଧାରିତ କରାଇବା ପାଇଁ ଏବଂ ଭବିଷ୍ୟତରେ ଜାତୀୟ ପ୍ରଗତିର ପଥକୁ ସୁଗମ୍ୟ କରାଇବା ଅବସରରେ ପର୍ଯ୍ୟାବରଣୀୟ ବିଭବରାଜିର ସମ୍ୟକ୍ ମୂଲ୍ୟାୟନ କରାଇବା ପାଇଁ କେତେକ ବେସରକାରୀ ସେବାକାରୀ ପ୍ରତିଷ୍ଠାନର ଭୂମିକା ବିଶେଷ ଅଭିନନ୍ଦନୀୟ ହୋଇଛି । ଏଠାରେ ଏହି ସମସ୍ତ ବେସରକାରୀ ସେବାକାରୀ ଅନୁଷ୍ଠାନଗୁଡ଼ିକର ତାଲିକା ପ୍ରଦାନ କରିବା ଏହି ଆଲୋଚନାର ଲକ୍ଷ୍ୟ ନୁହେଁ । ମାତ୍ର ଏହି ଆଲୋଚନା ମାଧ୍ୟମରେ ଏତିକି ମାତ୍ର ସୂଚାଇ ଦେବାର ଅଭିପ୍ରାୟ ହେଉଛି ଯେ କେବଳ ସରକାରୀ କର୍ମପ୍ରବଣତା ଉପରେ ନିର୍ଭର କରି ତଥା ରାଜନୈତିକ ଓ ପ୍ରଶାସନିକ ବ୍ୟବସ୍ଥା ଉପରେ ଭରସା କରି ଆମେ ଆମ ଦେଶକୁ ପର୍ଯ୍ୟାବରଣୀୟ ଦୁର୍ଗତି କବଳରୁ ଉଦ୍ଧାର କରି ପାରିବା ନାହିଁ । ଏଥିପାଇଁ ସାରା ଦେଶର ବିଭିନ୍ନ ଅଞ୍ଚଳରେ ଏହି ପ୍ରକାରର ବେସରକାରୀ ସେବାକାରୀ ଅନୁଷ୍ଠାନଗୁଡ଼ିକୁ ପ୍ରତିଷ୍ଠା କରାଯିବା ଏକାନ୍ତ ବାଞ୍ଛନୀୟ ବୋଧ ହେଉଛି । ବିଶିଷ୍ଟ ସମାଜସେବୀ, ବୈଜ୍ଞାନିକ, ସମାଜ ବିଜ୍ଞାନୀ, ଶିଳ୍ପୋଦ୍ୟୋଗୀ ଓ ସୁପରିଚାଳକମାନଙ୍କ ଅଧ୍ୟକ୍ଷତାରେ ଯଦି ଉପଯୁକ୍ତ ସେବାକାରୀ ଅନୁଷ୍ଠାନଗୁଡ଼ିକୁ ପ୍ରତିଷ୍ଠା କରାଯାଏ ଏବଂ ସେହି ଅନୁଷ୍ଠାନଗୁଡ଼ିକ ନିଜ ନିଜ ଅଞ୍ଚଳର ପର୍ଯ୍ୟାପ୍ତ ସର୍ବେକ୍ଷଣ ବଳରେ ସ୍ଥାନୀୟ ପର୍ଯ୍ୟାବରଣୀୟ ସମସ୍ୟାଗୁଡ଼ିକୁ ଠିକଣା ଭାବରେ ଅନୁଧ୍ୟାନ କରିବା ପୂର୍ବକ ଜନ ସାଧାରଣଙ୍କ ପ୍ରତ୍ୟକ୍ଷ ସହଯୋଗ ବଳରେ ଯଦି ସେଗୁଡ଼ିକର ସମାଧାନ ଦିଗରେ ଯତ୍ନବାନ ହୁଅନ୍ତି, ତାହାହେଲେ ପର୍ଯ୍ୟାବରଣୀୟ ଦୁର୍ଗତିକୁ ରୋକି ଦେବା ସଙ୍ଗେ ସଙ୍ଗେ ବିଭିନ୍ନ ପ୍ରକାର ଦେଶୋପଯୋଗୀ ବିଜ୍ଞାନସମ୍ମତ କୌଶଳ ଅବଲମ୍ବନରେ ଆମ ଦେଶରୁ ଦାରିଦ୍ର୍ୟର ଅପସାରଣ ମଧ୍ୟ ସମ୍ଭବ ହେବ ।

ପ୍ରାସଙ୍ଗିକତା ପରିପ୍ରେକ୍ଷୀରେ ନିମ୍ନଲିଖିତ ଆଲୋଚନାରେ ଆମ ଦେଶର ତିନିଟି ପ୍ରମୁଖ ବେସରକାରୀ ସେବାକାରୀ ତଥା ବୌଦ୍ଧିକ ପ୍ରତିଷ୍ଠାନ ସମ୍ପର୍କରେ ଚୁମ୍ବକୀୟ ସୂଚନା ପ୍ରଦତ୍ତ ହୋଇଛି ।

**(କ) ନୂଆଦିଲ୍ଲୀ ସ୍ଥିତ ଟାଟା ଏନର୍ଜୀ ରିସର୍ଚ୍ଚ ଇନ୍‌ଷ୍ଟିଚ୍ୟୁଟ୍ (ଟେରି : TERI)** : ଏହି ଗବେଷଣାତ୍ମକ ପ୍ରତିଷ୍ଠାନର ନିର୍ଦ୍ଦେଶକ ହେଉଛନ୍ତି ଡକ୍ଟର୍ ଆର୍. କେ. ପାଚାଉରି । ତାଙ୍କ ପାଣ୍ଡିତ୍ୟ ଓ ସାଙ୍ଗଠନିକ କାର୍ଯ୍ୟଦକ୍ଷତାର ପାରଦର୍ଶିତା ଯୋଗୁଁ ତାଙ୍କୁ 'ଇଣ୍ଟର ଗଭର୍ଣ୍ଣମେଣ୍ଟାଲ୍ ପ୍ୟାନେଲ୍ ଅନ୍ କ୍ଲାଇମେଟ୍ ଚେଞ୍ଜ୍' ଭଳି ଗୋଟିଏ ସୁଖ୍ୟାତ ସଂସ୍ଥାର ଚେୟାର୍‌ମ୍ୟାନ୍ ପଦରେ ଅଧିଷ୍ଠିତ କରାଯାଇଛି । ତାଙ୍କ ଅଧ୍ୟକ୍ଷତାରେ ୧୯୯୮ ମସିହାରେ ଏହି ଗବେଷଣାତ୍ମକ ଅନୁଷ୍ଠାନ ଆନୁକୂଲ୍ୟରେ

'Looking Back to Think Ahead : Green India 2047' ଶୀର୍ଷକ ଗୋଟିଏ ପର୍ଯ୍ୟାପ୍ତ ତଥ୍ୟାଶ୍ରୟୀ ତଥା ପଥପ୍ରଦର୍ଶନକାରୀ ଅମୂଲ୍ୟ ଗ୍ରନ୍ଥ ପ୍ରକାଶିତ ହୋଇଛି । ଆମ ଦେଶରେ ବିଭିନ୍ନ ଅଞ୍ଚଳର ପ୍ରବୀଣ ବୁଦ୍ଧିଜୀବୀ ଓ ବୈଜ୍ଞାନିକମାନଙ୍କ ବୌଦ୍ଧିକ ଶ୍ରମ ବଳରେ ରଚିତ ଏହି ସୁବୃହତ୍ ଗ୍ରନ୍ଥଟିରେ ଅତୀତର ତିକ୍ତ ଅଭିଜ୍ଞତା ସମ୍ପର୍କରେ ପ୍ରାମାଣିକ ତଥ୍ୟାଶ୍ରୟୀ ବର୍ଣ୍ଣନା ପ୍ରଦତ୍ତ ହେବା ସଙ୍ଗେ ସଙ୍ଗେ ୨୦୪୭ ମସିହା ବେଳକୁ ଉପଗତ ସମସ୍ୟାଗୁଡ଼ିକର ଯଥାର୍ଥ ସମାଧାନ ବଳରେ ଆମ ଦେଶକୁ ଶସ୍ୟଶ୍ୟାମଳା କରାଯିବା ସମ୍ପର୍କରେ ତଥା ଆମ ଦେଶରେ ଗୋଟିଏ ପରିପୋଷଣକାରୀ ସମାଜର (Sustainable Society) ପ୍ରତିଷ୍ଠା ସମ୍ପର୍କରେ ସୁଚିନ୍ତିତ ପରାମର୍ଶ ଦିଆଯାଇଛି ।

ଏହି ସମୟୋପଯୋଗୀ ପ୍ରକାଶନଟି ଆମ ଦେଶଭଳି ସମଧର୍ମୀ ବିକାଶଶୀଳ ରାଷ୍ଟ୍ରଗୁଡ଼ିକ ପାଇଁ ମଧ୍ୟ ଅତ୍ୟନ୍ତ ଉପାଦେୟ ହୋଇଛି । TERI ଆନୁକୂଲ୍ୟରେ ସାମୟିକ ଭାବରେ ଆମ ଦେଶର ପରିବେଶୀୟ ପ୍ରଦୂଷଣ କେନ୍ଦ୍ରିକ ତଥା ଶକ୍ତି ଅନାଟନ ରୂପୀ ଗୁରୁତ୍ୱପୂର୍ଣ୍ଣ ସମସ୍ୟାକେନ୍ଦ୍ରିକ ଅନେକଗୁଡ଼ିଏ ପୁସ୍ତକ ପ୍ରକାଶିତ ହୋଇଛି ଏବଂ ଏ ରୂପ କ୍ରିୟାଶୀଳତାକୁ ଏହି ଅନୁଷ୍ଠାନ ଅବ୍ୟାହତ ରଖିଛନ୍ତି । ମାତ୍ର ପଛକୁ ଚାହିଁ ଆଗକୁ ଚିନ୍ତା କରିବା ସମ୍ପର୍କରେ ସଦ୍ୟ ପ୍ରକାଶିତ ଏହି ଅମୂଲ୍ୟ ଗ୍ରନ୍ଥଟିର ବହୁଳ ପ୍ରସାର ଘଟିବା ଦ୍ୱାରା ଆମ ଦେଶର ବୁଦ୍ଧିଜୀବୀ ଓ ସମାଜସେବୀମାନେ ବୈୟକ୍ତିକ ଭାବରେ ତଥା ଆନୁଷ୍ଠାନିକ ଉଦ୍ୟମ ବଳରେ ସ୍ଥାନୀୟ ସମସ୍ୟାଗୁଡ଼ିକର ସମାଧାନ ପାଇଁ ନିଶ୍ଚିତ ଭାବରେ ଉପଯୁକ୍ତ ଦିକ୍‌ଦର୍ଶନ ପାଇ ପାରିବାର ସମ୍ଭାବନା ରହିଛି । ଏହି ଗ୍ରନ୍ଥଟିର ଅନ୍ୟତମ ପ୍ରମୁଖ ବିଶେଷତ୍ୱ ହେଉଛି ଯେ ଏଥିରେ ପର୍ଯ୍ୟାବରଣୀୟ ବିଭବରାଜିକୁ ଜାତୀୟ ଅର୍ଥନୀତି ସହିତ ଓତଃପ୍ରୋତଃ ଭାବରେ ଜଡ଼ିତ କରାଯିବାର ଔଚିତ୍ୟ ସମ୍ପର୍କରେ ସ୍ପଷ୍ଟୀକରଣ ପ୍ରଦତ୍ତ ହୋଇଛି । ପର୍ଯ୍ୟାବରଣୀୟ ଦୁର୍ଗତି ଯୋଗୁଁ ଏବଂ ବିଭିନ୍ନ ପ୍ରକାର ପରିବେଶୀୟ ପ୍ରଦୂଷଣ ଯୋଗୁଁ ଆମ ଦେଶର ଧନ ଜୀବନର ଯେଉଁ ପ୍ରଭୂତ କ୍ଷତି ଘଟୁଛି, ଏଥିରେ ତାହାର ଅଟକଳ ପ୍ରଦତ୍ତ ହୋଇଛି । ଏବଂବିଧ ଅଟକଳକୁ ମୋଟ ଜାତୀୟ ଉତ୍ପାଦନ (GNP) ଓ ମୋଟ ଘରୋଇ ଉପାଦାନ (GDP) ସମ୍ପର୍କୀୟ ହିସାବର ଅନ୍ତର୍ଭୁକ୍ତ କରାଯିବାର ଔଚିତ୍ୟ ସମ୍ପର୍କରେ ମଧ୍ୟ ଏହି ଗ୍ରନ୍ଥଟିରେ ପ୍ରାଞ୍ଜଳ ଭାବରେ ବୁଝାଇ ଦିଆଯାଇଛି । ପରିବେଶୀୟ ଅର୍ଥନୀତିକୁ ଜାତୀୟ ଅର୍ଥନୀତି ସହିତ ଅର୍ଥସୂଚକ ମାର୍ଗରେ ସାମିଲ୍ କରାଯିବା ଦ୍ୱାରା ତଥା ପରିବେଶୀୟ ବିଭବରାଜିର ସମ୍ୟକ୍ ମୂଲ୍ୟାୟନ କରାଯିବା ଦ୍ୱାରା ସର୍ବବିଧ ଉତ୍ପାଦନ ବ୍ୟାପାରଗୁଡ଼ିକରେ ଜଳ,

ବାୟୁ, ମୃତ୍ତିକା, ଖଣିଜ ଦ୍ରବ୍ୟ, ଜୀବାବଶେଷ ପ୍ରସୂତ ଇନ୍ଧନ ଓ ଜୈବ ବସ୍ତୁଗୁଡ଼ିକର ଭୂମିକା ସୁସ୍ପଷ୍ଟ ହୋଇଯିବ ଏବଂ ଏଗୁଡ଼ିକୁ ବ୍ୟବହାର କରିବା ବ୍ୟାପାରରେ ସମ୍ପୃକ୍ତ କର୍ତ୍ତୃପକ୍ଷ ଏଗୁଡ଼ିକର ସଂରକ୍ଷଣ ଓ ମିତବ୍ୟୟିତା ଦିଗରେ ସମୁଚିତ ପ୍ରାଧାନ୍ୟ ଆରୋପ କରିବାକୁ ବାଧ ହେବେ । ପରିବେଶୀୟ ବିଭବରାଜିର ଯଥାର୍ଥ ମୂଲ୍ୟାୟନ କରାଯିବା ଦ୍ୱାରା ହିଁ ଜାତୀୟ ପ୍ରଗତିର ଧାରାକୁ ପରିପୋଷଣକାରୀ ମାର୍ଗରେ ପରିଚାଳନା କରିବା ପାଇଁ ସରକାର ଉପଯୁକ୍ତ ନୀତିଗୁଡ଼ିକୁ ପ୍ରଣୟନ କରିବା ପୂର୍ବକ ସେଗୁଡ଼ିକର କାର୍ଯ୍ୟକାରିତା ଦିଗରେ ପ୍ରାଧାନ୍ୟ ଆରୋପ କରିବାକୁ ବାଧ ହେବେ ।

'Green India 2047' ପ୍ରକଳ୍ପଟିର ଅନ୍ୟତମ ସ୍ୱତନ୍ତ୍ର ବିଭାବ ସମ୍ପର୍କରେ ଉଲ୍ଲେଖ କରିବା ସମୀଚୀନ ବୋଧ ହେଉଛି । ଆମ ଦେଶର ୧୨ଟି ସୁବୃହତ୍ ବ୍ୟାବସାୟିକ ପ୍ରତିଷ୍ଠାନ ଏହି ପ୍ରକଳ୍ପଟିର 'ସ୍ପନ୍‌ସର' ଭାବରେ ଏବଂ ୮ଟି ସୁବୃହତ୍ ବ୍ୟାବସାୟିକ ପ୍ରତିଷ୍ଠାନ ଏହାର 'ସବ୍‌ସ୍କ୍ରାଇବର' ଭାବରେ ପୃଷ୍ଠପୋଷକ ଦାୟିତ୍ୱ ତୁଲାଇବାକୁ ସମ୍ମତ ହୋଇଛନ୍ତି । ଏକବିଂଶ ଶତାବ୍ଦୀର ଜ୍ଞାନାଶ୍ରୟୀ ସମାଜରେ ବହୁବିଧ କୃଷିଜାତ ଓ ଶିଳ୍ପଜାତ ଦ୍ରବ୍ୟଗୁଡ଼ିକୁ ପରିବେଶର ପରିପୋଷଣକାରୀ ମାର୍ଗରେ ଉତ୍ପାଦନ କରାଯିବାର ସମ୍ଭାବନା ଉଜ୍ଜ୍ୱଳମୟ ହୋଇଛି । ପରିବେଶସଚେତନ ଉପଭୋକ୍ତାମାନେ କେବଳ ଏହି ଧରଣର ଦ୍ରବ୍ୟ ବଜାରମାନଙ୍କରୁ ଖରିଦ କରିବାକୁ ଆଗ୍ରହୀ ହେବେ । ଆମ ଦେଶର ଉତ୍ପାଦକ ଓ ବ୍ୟବସାୟୀମାନେ ଭବିଷ୍ୟତର ଉତ୍ପାଦନ-କେନ୍ଦ୍ରିକ କର୍ମାଭିମୁଖ୍ୟ ସଂପର୍କରେ ସଚେତନ ହୋଇଥିବାର ଏହା ଏକ ଶୁଭ ଲକ୍ଷଣ ନୁହେଁ କି ? ଆମେ ଆଶା କରିବା ଯେ ଉପଯୁକ୍ତ ବୌଦ୍ଧିକ ଓ ସାଂଗଠନିକ ଉଦ୍ୟମ ବଳରେ ଆମ ଦେଶରୁ ପର୍ଯ୍ୟାବରଣୀୟ ଦୁର୍ଗତି ଓ ଦାରିଦ୍ର୍ୟର ଅପସାରଣ ଦିଗରେ ଯେଉଁ ଉଦ୍ୟମ ଏବେ ଅବ୍ୟାହତ ରହିଛି, ଆମ ଦେଶର ଉତ୍ପାଦକ, ଛୋଟବଡ଼ ବ୍ୟବସାୟୀ ଓ ସୁବୃହତ୍ ବ୍ୟାବସାୟିକ ପ୍ରତିଷ୍ଠାନଗୁଡ଼ିକ ମଧ୍ୟ ତାହାକୁ ଆଗେଇ ନେବା ଦିଗରେ ସମୟୋଚିତ ପଦକ୍ଷେପଗୁଡ଼ିକୁ କାର୍ଯ୍ୟକାରୀ କରାଇବେ । ଏତଦ୍‌ଭିନ୍ନ ଉପୋଭୋକ୍ତାମାନଙ୍କ ବିରାଗଭାଜନ ହେବାର ପରିଣତି ସ୍ୱରୂପ ସେମାନଙ୍କ ଭବିଷ୍ୟତ ମଧ୍ୟ ଅନ୍ଧକାରମୟ ହୋଇଯିବ ।

[ପୁସ୍ତକଟିର ଏବଂବିଧ ତାତ୍ପର୍ଯ୍ୟ ସଂପର୍କରେ ଆମ ରାଜ୍ୟର ବିଜ୍ଞାନପ୍ରେମୀ ଜନସାଧାରଣ ଓ ଛାତ୍ରଛାତ୍ରୀଙ୍କୁ ସଚେତନ କରାଇବା ପାଇଁ ମୁଁ ଇତ୍ୟବସରରେ **'ଏକବିଂଶ ଶତାବ୍ଦୀରେ ସବୁଜ ଭାରତର ପରିକଳ୍ପନା'** ଶୀର୍ଷକ ଏକ ସମୀକ୍ଷାମୂଳକ ପୁସ୍ତକ ରଚନା କରିଛି ଏବଂ ଏହା ମଧ୍ୟ ଇତ୍ୟବସରରେ ପ୍ରକାଶିତ ହୋଇଛି ।]

**(କ) ନୂଆଦିଲ୍ଲୀସ୍ଥିତ ସେଣ୍ଟର ଫର୍ ସାଇନ୍‌ସ ଆଣ୍ଡ ଏନ୍‌ଭାଇରନମେଣ୍ଟ (ସି.ଏସ୍.ଇ. : CSE) :-**

ଶ୍ରୀ ଅନୀଲ ଅଗରୱାଲ ଜଣେ ପ୍ରବୀଣ ପରିବେଶ-ବିଜ୍ଞାନୀ ଓ ସିଦ୍ଧହସ୍ତ ବିଜ୍ଞାନ-ସାହିତ୍ୟ ରଚୟିତା ଭାବରେ ଆନ୍ତଃରାଷ୍ଟ୍ରୀୟ ସୁଖ୍ୟାତି ଅର୍ଜନ କରିଛନ୍ତି । ସ୍ୱାଧୀନତା-ଉତ୍ତର କାଳରେ ବେଶ୍ ସୁଦୀର୍ଘ କାଳ ବ୍ୟାପୀ ସେ ସ୍ୱପ୍ରତିଷ୍ଠିତ ସେଣ୍ଟର ଫର୍ ସାଇନ୍‌ସ ଆଣ୍ଡ ଏନ୍‌ଭାଇରନ୍‌ମେଣ୍ଟ ନାମକ ଏକ ଅନୁଷ୍ଠାନ ଆନୁକୂଲ୍ୟରେ ଆମ ଦେଶରେ ସଂଘଟିତ ପରିବେଶୀୟ ପ୍ରଦୂଷଣ ଓ ପର୍ଯ୍ୟାବରଣୀୟ ଦୁର୍ଗତି ସଂପର୍କରେ ଜନସାଧାରଣଙ୍କୁ ସଚେତନ କରାଇଛନ୍ତି । ତାଙ୍କ ଦ୍ୱାରା ସଂପାଦିତ ତଥା ସୁନୀତା ନାରାୟଣଙ୍କ ଦ୍ୱାରା ପ୍ରକାଶିତ 'Down to Earth' ଶୀର୍ଷକ ପତ୍ରିକାଟି ପରିବେଶ ବିଜ୍ଞାନ ତଥା ଆଧୁନିକ ବିଜ୍ଞାନର ଅନ୍ୟାନ୍ୟ ବିଭାଗ ଓ ବହୁବିଧ ପ୍ରଯୁକ୍ତି ବିଦ୍ୟା ସଂପର୍କରେ ଆମ୍ଭମାନଙ୍କୁ ସବିଶେଷ ଜ୍ଞାନ ଯୋଗାଇ ଦେବା ପାଇଁ ଉଦ୍ଦିଷ୍ଟ ହୋଇଛି । ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା ସଂପର୍କୀୟ ଜ୍ଞାତବ୍ୟ ତଥ୍ୟରାଜି ତଥା ସେଗୁଡ଼ିକର ଜନସମାଜ ଓ ପର୍ଯ୍ୟାବରଣ ଉପରେ ସୁଦୂରପ୍ରସାରୀ ପ୍ରଭାବ ସଂପର୍କରେ ଏହି ପତ୍ରିକାଟିରେ ପ୍ରକାଶିତ ସମ୍ବାଦ, ପ୍ରବନ୍ଧ ଓ ସମୀକ୍ଷାମୂଳକ ଅନୁଶୀଳନର ଗୁଣାତ୍ମକ ମାନ ଇତର ବିଜ୍ଞାନୋନ୍ନତ ରାଷ୍ଟ୍ରମାନଙ୍କରେ ପ୍ରକାଶିତ ଯେ କୌଣସି ସୁପ୍ରସିଦ୍ଧ ବିଜ୍ଞାନ-ପତ୍ରିକାର ଗୁଣାତ୍ମକ ମାନ ସହ ସମକକ୍ଷ ହୋଇ ପାରିଛି । ସିଏସ୍‌ଇ ଆମ ଦେଶର ପରିବେଶୀୟ ଅବସ୍ଥା ସଂପର୍କରେ ସମୟକ୍ରମେ ଗୋଟିକ ପରେ ଗୋଟିଏ କ୍ରମରେ ପାଞ୍ଚଟି ରିପୋର୍ଟ ପ୍ରକାଶ କଲେଣି । 'The Citizen's Fifth Report on The State of India's Environment' ଶୀର୍ଷକ ରିପୋର୍ଟଟି ୧୯୯୯ ମସିହାରେ ସଦ୍ୟ ପ୍ରକାଶିତ ହୋଇଛି । ଅନୀଲ ଅଗରୱାଲଙ୍କ ବଳିଷ୍ଠ ସଂପାଦନାରେ ସୁନୀତା ନାରାୟଣଙ୍କ ଦ୍ୱାରା ସିଏସ୍‌ଇ ଆନୁକୂଲ୍ୟରେ ପ୍ରକାଶିତ ଏହି ରିପୋର୍ଟଟିକୁ ଆମ ଦେଶର ପରିବେଶ ଆଧାରିତ ଗୋଟିଏ 'Millennium Issue' ବା ସହସ୍ରାବ୍ଦ-ସ୍ମାରକୀ ସଂଖ୍ୟା ଭାବରେ ବିଚାର କରିବା ହିଁ ଯୁକ୍ତିଯୁକ୍ତ ବୋଧ ହେଉଛି ।

TERI ଆନୁକୂଲ୍ୟରେପ୍ରକାଶିତ 'Looking Back To Think Ahead : Green India 2047' ଶୀର୍ଷକ ଅମୂଲ୍ୟ ଗ୍ରନ୍ଥଟିକୁ ପାଠ କରିବା ପୂର୍ବକ ତାହାର ଏକ ସମୀକ୍ଷା ପ୍ରସ୍ତୁତ କରିବା ପରେ ଏହି ପୁସ୍ତକଟିକୁ ପାଠ କରିବାର ସୁଯୋଗ ପାଇଲି । ଏହାର ବୈଶିଷ୍ଟ୍ୟ ହେଉଛି ଯେ ବହୁବିଧ କାରଣ ଯୋଗୁଁ ବିଭିନ୍ନ ପ୍ରକାରେ ଆମ ଦେଶରେ ସଂଘଟିତ ପରିବେଶୀୟ ପ୍ରଦୂଷଣ ଓ ପର୍ଯ୍ୟାବରଣୀୟ ଦୁର୍ଗତି ସଂପର୍କରେ ପର୍ଯ୍ୟାପ୍ତ ଗବେଷଣାଶ୍ରୟୀ ତଥ୍ୟରାଜି ପରିବେଷଣ କରିବା ସଂଗେ

ସଂଗେ ଏଥିରେ ଆମ ଦେଶର କେତେକ ଗ୍ରାମାଞ୍ଚଳରେ ବିଭିନ୍ନ ବେସରକାରୀ ସେବାକାରୀ ସଂଗଠନଗୁଡ଼ିକ ଆନୁକୂଲ୍ୟରେ ପରିଚାଳିତ ଫଳପ୍ରଦ କାର୍ଯ୍ୟକ୍ରମଗୁଡ଼ିକ ସଂପର୍କରେ ସନ୍ତୋଷପ୍ରଦ ବର୍ଣ୍ଣନା ପ୍ରଦତ୍ତ ହୋଇଛି । ରିପୋର୍ଟଟିରୁ ଜଣା ପଡୁଛି ଯେ ଗଣମାଧ୍ୟମଗୁଡ଼ିକର ଶତ ପ୍ରଚାର ସତ୍ତ୍ୱେ ନଗରାଞ୍ଚଳ ଓ ଶିଳ୍ପାଞ୍ଚଳର ପରିବେଶୀୟ ସମସ୍ୟାଗୁଡ଼ିକ ଜନ-ଜୀବନକୁ ଦିନକୁ ଦିନ ଅଧିକରୁ ଅଧିକ ଦୁର୍ବିସହ କରୁଛି ଏବଂ ପରିବେଶୀୟ ପ୍ରଦୂଷଣର ଏପରି ତୀବ୍ର ଉତ୍ପୀଡ଼ନ ସତ୍ତ୍ୱେ ସମସ୍ୟାଗୁଡ଼ିକର ସମାଧାନ ଦିଗରେ ରାଜନୈତିକ ଓ ପ୍ରଶାସନିକ ସ୍ତରରେ କୌଣସି ପ୍ରକାର ଶୃଙ୍ଖଳିତ କାର୍ଯ୍ୟକ୍ରମଗୁଡ଼ିକୁ ଧାରାବାହିକ ଭାବରେ କାର୍ଯ୍ୟକାରୀ କରାଇବା ସଂଭବ ହୋଇନାହିଁ । ଏଣୁ ଏହି ରିପୋର୍ଟରେ କ୍ଷୋଭ ପ୍ରକାଶ କରାଯାଇଛି ଯେ ପରିସ୍ଥିତି ପୂରାପୂରି ଅସମ୍ଭାଳ ହୋଇଯିବା ପରେ ତଥା ବିପୁଳ ଧନ ଜୀବନର ହାନି ଘଟିବା ପରେ ଏହାର ପ୍ରତିକାର ପାଇଁ ଦୃଢ଼ ଜନମତର ସର୍ଜନା ସଂଭବ ହେବ ଏବଂ ଏହି ଜନମତର ଚାପରେ ହିଁ ସରକାରୀ କର୍ତ୍ତୃପକ୍ଷ ଠିକଣା ପଦକ୍ଷେପଗୁଡ଼ିକୁ କାର୍ଯ୍ୟକାରୀ କରାଇବାକୁ ବାଧ ହେବେ । ମାତ୍ର ଏଥିରେ ସ୍ପଷ୍ଟ ଭାବରେ ବୁଝାଇ ଦିଆଯାଇଛି ଯେ ବିଗତ ଦୁଇ ଦଶନ୍ଧି ମଧ୍ୟରେ ଆମ ଦେଶର କେତେକ ଗ୍ରାମାଞ୍ଚଳରେ ବେସରକାରୀ ସେବାକାରୀ ଅନୁଷ୍ଠାନଗୁଡ଼ିକର ଅଧକ୍ଷତା ତଥା ଜନସାଧାରଣଙ୍କ ପ୍ରତ୍ୟକ୍ଷ ସହଯୋଗ ବଳରେ ପ୍ରଶଂସନୀୟ କାର୍ଯ୍ୟକ୍ରମଗୁଡ଼ିକୁ ଠିକଣା ଭାବରେ କାର୍ଯ୍ୟକାରୀ କରାଯିବା ସଂଭବ ହୋଇଛି । ଏହି ସୁବୃହତ୍ ପ୍ରାମାଣିକ ତଥ୍ୟାଶ୍ରୟୀ ତଥା ସୁଖପାଠ୍ୟ ରିପୋର୍ଟଟିକୁ ପାଠ କରିବା ପରେ ଆମର ହୃଦ୍‌ବୋଧ ହେଉଛି ଯେ ପ୍ରଗତିମୂଳକ ତଥା ବିଜ୍ଞାନସମ୍ମତ କାର୍ଯ୍ୟାନୁଷ୍ଠାନଗୁଡ଼ିକ ବଳରେ ପର୍ଯ୍ୟାବରଣର ଦୁର୍ଗତିକୁ ରୋକିବା ଦ୍ୱାରା ଆମ ଦେଶର ଗ୍ରାମାଞ୍ଚଳରୁ ଅର୍ଥନୈତିକ ଦାରିଦ୍ର୍ୟର ଅପସାରଣ ଘଟି ପାରିବ । ବେସରକାରୀ ସେବାକାରୀ ଅନୁଷ୍ଠାନଗୁଡ଼ିକ ଯଦି ନିଃସ୍ୱାର୍ଥପର ଭାବରେ ତଥା ନିଷ୍ଠାପର ଭାବରେ ନିଜ ନିଜ ଅଞ୍ଚଳର ସାଂସ୍କୃତିକ ଓ ପର୍ଯ୍ୟାବରଣୀୟ ସ୍ୱାତନ୍ତ୍ର୍ୟକୁ ବିଚାରକୁ ନେଇ ସ୍ଥାନୀୟ ବାସିନ୍ଦାମାନଙ୍କୁ ଶିକ୍ଷିତ କରାଇପାରନ୍ତି ଏବଂ ସେମାନଙ୍କୁ ଉପଯୁକ୍ତ ତାଲିମ ବଳରେ ବିଭିନ୍ନ ଆୟକାରୀ ଧନ୍ଦାରେ ଆତ୍ମନିୟୋଗ ..ରିବା‌ର ସାମର୍ଥ୍ୟ ଯୋଗାଇ ପାରନ୍ତି, ତାହାହେଲେ ସେମାନେ ସ୍ୱତଃସ୍ଫୂର୍ତ୍ତ ଭାବରେ ପର୍ଯ୍ୟାବରଣର ପରିପୋଷଣ ଦିଗରେ କର୍ମପ୍ରବଣ ହେବେ ଏବଂ ଶିକ୍ଷା ଦୀକ୍ଷାର ମହତ୍ତ୍ୱ ଠିକଣା ଭାବରେ ଉପଲବ୍ଧି କରି ପାରିବେ । ଗ୍ରାମାଞ୍ଚଳର ଶିଶୁମାନଙ୍କୁ ପ୍ରାଥମିକ ଶିକ୍ଷା ପ୍ରଦାନ, ନାରୀ ଶିକ୍ଷାର ପ୍ରସାର, ବିଭିନ୍ନ ଆୟକାରୀ ଧନ୍ଦାଗୁଡ଼ିକ ସଂପର୍କରେ ତାଲିମ, ସ୍ୱାସ୍ଥ୍ୟର ସୁରକ୍ଷା ଆଦି ବ୍ୟବସ୍ଥାଗୁଡ଼ିକୁ କାର୍ଯ୍ୟକାରୀ କରାଇବା

ଦିଗରେ ଏହି ସେବାକାରୀ ଅନୁଷ୍ଠାନଗୁଡ଼ିକ ଉଦ୍ୟମୀ ହେବା ଅବସରରେ ପାରିପାର୍ଶ୍ୱିକ ପରିବେଶ ଓ ପର୍ଯ୍ୟାବରଣର ଗୁରୁତ୍ୱପୂର୍ଣ୍ଣ ଭୂମିକା ସଂପର୍କରେ ସ୍ଥାନୀୟ ଜନସାଧାରଣଙ୍କୁ ସଚେତନ କରାଇ ପାରିବେ । ସେମାନଙ୍କ ଆୟକାରୀ ଧନ୍ଦା ପ୍ରାକୃତିକ ସମ୍ବଳ ଉପରେ ନିର୍ଭରଶୀଳ ହୋଇଥିବାର ଚେତନା ହିଁ ସେମାନଙ୍କୁ ଏହାର ସଂରକ୍ଷଣ ଓ ପରିପୋଷଣ ଦିଗରେ କର୍ମତତ୍ପର ହେବା ପାଇଁ କର୍ମ-ପ୍ରେରଣା ଯୋଗାଇ ଦେବ । ଆମ ଦେଶର ବିଭିନ୍ନ ଗ୍ରାମାଞ୍ଚଳରେ ଅନେକଗୁଡ଼ିଏ ବେସରକାରୀ ସେବାକାରୀ ଅନୁଷ୍ଠାନଗୁଡ଼ିକ ଦ୍ୱାରା ଇତ୍ୟବସରରେ ଏ ଧରଣର କାର୍ଯ୍ୟାନୁଷ୍ଠାନଗୁଡ଼ିକ ଠିକଣା ଭାବରେ କାର୍ଯ୍ୟକାରୀ କରାଯାଇଥିବା ଯୋଗୁଁ ସେଠାକାର ପର୍ଯ୍ୟାବରଣୀୟ ଦୁର୍ଗତିକୁ ରୋକିବା ସଂଗେ ସଂଗେ ତାହାର ପରିପୋଷଣ ଓ ସ୍ଥାନୀୟ ବାସିନ୍ଦାମାନଙ୍କ ଦାରିଦ୍ର୍ୟର ଅପସାରଣ ସଂଭବ ହୋଇଛି ।

ଏହି ସୁବୃହତ ରିପୋର୍ଟଟିରୁ ଏବଂବିଧ ଉପଲବ୍ଧି ପାଇବା ପରେ ହିଁ ମୁଁ ଏହି ସମୀକ୍ଷାମୂଳକ ପୁସ୍ତକଟିକୁ ରଚନା କରିଛି । ଏହି ବିନମ୍ର ବୌଦ୍ଧିକ ପ୍ରୟାସର ଏକମାତ୍ର ଆଭିମୁଖ୍ୟ ହେଉଛି ଯେ ଆମ ରାଜ୍ୟର ଶିକ୍ଷିତ ଯୁବକ ଯୁବତୀମାନେ ବେସରକାରୀ ସେବାକାରୀ ଅନୁଷ୍ଠାନଗୁଡ଼ିକର ଦେଶ ଗଠନ ବ୍ୟାପାରରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ସଂପର୍କରେ ଅବଧାରିତ ହୁଅନ୍ତୁ । ସେମାନେ ସମ୍ୟକ ଭାବରେ ବୁଝିବା ଉଚିତ ଯେ କେବଳ ସରକାର ବା ପ୍ରଶାସନ ଉପରେ ନିର୍ଭର କଲେ ଗୋଟିଏ ଦେଶ କେବେହେଲେ ଉଧେଇ ପାରିବ ନାହିଁ । ଏଥିପାଇଁ ଉପଯୁକ୍ତ ଅନୁଷ୍ଠାନଗୁଡ଼ିକ ଜରିଆରେ ହିଁ ଆମ୍ଭମାନଙ୍କୁ ନିର୍ଦ୍ଦିଷ୍ଟ ଲକ୍ଷ୍ୟଗୁଡ଼ିକୁ ହାସଲ କରିବା ପଥରେ ଅଗ୍ରସର ହେବାକୁ ପଡ଼ିବ । ଆନୁଷ୍ଠାନିକ ଉଦ୍ୟମରେ ସଫଳତା ହିଁ ଦେଶର ପ୍ରଗତିଶୀଳତାକୁ ସୁଗମ୍ୟ ଓ ସତ୍‌ପଥଗାମୀ କରି ପାରିବ । ଏଣୁ ଆମ ରାଜ୍ୟରେ ଯେଉଁ ଯୁବକ ଯୁବତୀମାନେ ଜ୍ଞାନ, ଉପଲବ୍ଧି, ସାଂଗଠିକ କର୍ମପ୍ରବଣତା ଓ ନବୀକରଣ-କ୍ଷମତା ବଳରେ କୌଣସି ନୂତନ ପ୍ରକଳ୍ପ ଅବଲମ୍ବନରେ ଉନ୍ନୟନମୂଳକ ବ୍ୟାପାରଗୁଡ଼ିକ ସହିତ ଜଡ଼ିତ ହେବାକୁ ଚାହୁଁଛନ୍ତି, ସେମାନେ ନିଜ ଆଡୁ ବେସରକାରୀ ସେବାକାରୀ ପ୍ରତିଷ୍ଠାନ ଗଠନ କରି ପାରନ୍ତି କିମ୍ବା କୌଣସି ସୁପ୍ରତିଷ୍ଠିତ ସେବାକାରୀ ଅନୁଷ୍ଠାନରେ ସକ୍ରିୟ ସଭ୍ୟ ଭାବରେ ଯୋଗ ଦେଇ ପାରନ୍ତି । ଯଦି ସେମାନେ ନିଜ ନିଜ ଅନ୍ତର୍ନିହିତ ପ୍ରତିଭା ଓ କାର୍ଯ୍ୟଦକ୍ଷତା ବଳରେ ସ୍ଥାନୀୟ ବାସିନ୍ଦାମାନଙ୍କ ସହଯୋଗ ନେଇ ନୂଆ ନୂଆ କୌଶଳ ଅବଲମ୍ବନରେ ଜନସାଧାରଣଙ୍କୁ ପରିବେଶର ପରିପୋଷଣକାରୀ ମାର୍ଗର ଉପାର୍ଜନକ୍ଷମ ଧନ୍ଦା ଯୋଗାଇ ପାରନ୍ତି, ତାହାହେଲେ ସେମାନେ ନିଶ୍ଚିତଭାବରେ କୃତ କର୍ମଗୁଡ଼ିକ

ଯୋଗୁଁ ଆତ୍ମସନ୍ତୋଷ ପାଇ ପାରିବେ । ଏହାକୁ ଜୀବିକା ରୂପେ ଆଦରି ନେବା ଦ୍ୱାରା ତଥା ଏ ଦିଗରେ ନିଷ୍ଠାପର ଉଦ୍ୟମ ଚଳାଇବା ଦ୍ୱାରା ନିଜ ପରିବାରର ଭରଣ ପୋଷଣ ପାଇଁ ସମ୍ବଳର ଅଭାବ ଘଟିବ ନାହିଁ, ସମକାଳୀନ ଭାବରେ ସଂପୃକ୍ତ ଅନୁଷ୍ଠାନର ଲାଭପ୍ରଦ ଭୂମିକା ଯୋଗୁଁ ଗୋଟିଏ ଅଞ୍ଚଳର ଶହ ଶହ ବାସିନ୍ଦା ଉପକୃତ ହୋଇ ପାରିବେ । ଆମ ରାଜ୍ୟର ଯୁବକ ଯୁବତୀମାନଙ୍କ ମାନସପଟରେ ଏପରି ଶୁଭକାରୀ ଚେତନାର ଜାଗରଣ ଘଟାଇବା ପାଇଁ ରଚିତ ଏହି ପୁସ୍ତକଟି ଯଦି ଏ ଦିଗରେ ଯୁବମାନସରେ ସାମାନ୍ୟତମ ଆଲୋଡ଼ନ ସୃଷ୍ଟି କରିପାରେ, ତାହାହେଲେ ମୋର ଶ୍ରମ ସାର୍ଥକ ହୋଇଛି ବୋଲି ବିଚାରିବି ।

**(ଗ) ଏମ୍. ଏସ୍. ସ୍ୱାମୀନାଥନ ରିସର୍ଚ୍ଚ ଫାଉଣ୍ଡେସନ : ଗ୍ଲୋବାଲ ହଙ୍ଗର ପ୍ରୋଜେକ୍ଟ :-**

ଏହି ସମୀକ୍ଷାମୂଳକ ପୁସ୍ତକଟିର ରଚନା ଶେଷ ହୋଇଯିବା ବେଳକୁ ଏକ ଅଭିନବ କର୍ମ-ପନ୍ଥା ଅବଲମ୍ବନରେ କ୍ରିୟାଶୀଳ ହୋଇଥିବା ଗୋଟିଏ ବେସରକାରୀ ସେବାକାମୀ ଅନୁଷ୍ଠାନର ଅଭିନନ୍ଦନୀୟ ଉଦ୍ୟମ ମୋର ଦୃଷ୍ଟି ଆକର୍ଷଣ କଲା । ଏହି ଅନୁଷ୍ଠାନଟି ଗ୍ରାମାଞ୍ଚଳର ବାସିନ୍ଦାମାନଙ୍କ କ୍ରୟ-ଶକ୍ତିରେ ବୃଦ୍ଧି ଘଟାଇବା ପୂର୍ବକ ସେମାନଙ୍କୁ କ୍ଷୁଧା କବଳରୁ ମୁକ୍ତ କରିବା ପାଇଁ ଯତ୍ନବାନ ହୋଇଛି । ଏହି ମହନୀୟ ଲକ୍ଷ୍ୟ ପୂରଣ ପଇଁ ଆମ ଦେଶର ଅନ୍ତଃରାଷ୍ଟ୍ରୀୟ ସୁଖ୍ୟାତିପ୍ରାପ୍ତ ପ୍ରବୀଣ କୃଷିବିଜ୍ଞାନୀ ସ୍ୱପ୍ରତିଷ୍ଠିତ 'ଏମ୍.ଏସ୍. ସ୍ୱାମିନାଥନ ରିସର୍ଚ୍ଚ ଫାଉଣ୍ଡେସନ' ନାମକ ଏକ ଗବେଷଣାତ୍ମକ ପ୍ରତିଷ୍ଠାନର କର୍ତ୍ତୃତ୍ୱାଧୀନରେ 'ଗ୍ଲୋବାଲ୍ ହଙ୍ଗର୍ ପ୍ରୋଜେକ୍ଟ' ଶୀର୍ଷକ ଗୋଟିଏ ପ୍ରକଳ୍ପକୁ ବିଗତ କିଛି ବର୍ଷ ହେଲା ତାମିଲନାଡୁ ରାଜ୍ୟରେ କାର୍ଯ୍ୟକାରୀ କରାଉଛନ୍ତି । ସୁପରିକଳ୍ପିତ ପ୍ରକଳ୍ପଟିର ଯଥାବିଧି ଶୃଙ୍ଖଳିତ ଓ ଧାରାବାହିକ କ୍ରିୟାଶୀଳତା ପାଇଁ ସେ ପ୍ରଥମେ ତାମିଲନାଡୁ ରାଜ୍ୟର ବିଭିନ୍ନ ଅଞ୍ଚଳର ବ୍ୟାପକ ସର୍ବେକ୍ଷଣ ଚଳାଇ ସେଠାକାର ବାସିନ୍ଦାମାନଙ୍କ ଜୀବିକାର୍ଜନ ପଦ୍ଧତି, ଅର୍ଥନୈତିକ ସ୍ଥିତାବସ୍ଥା ଓ ସାମାଜିକ ଚଳଣି ସଂପର୍କରେ ପର୍ଯ୍ୟାପ୍ତ ତଥ୍ୟ ସଂଗ୍ରହ କରିଛନ୍ତି । ଏଥିପାଇଁ କମ୍ପ୍ୟୁଟର ହିଁ ବିଶେଷ ସହାୟକ ହୋଇଛି । ଆଗାମୀ ତଥ୍ୟାଶ୍ରୟୀ ଯୁଗରେ ଜନହିତକାରୀ ବ୍ୟାପାରଗୁଡ଼ିକର କାର୍ଯ୍ୟକାରିତା ପାଇଁ ତଥ୍ୟ-ଟେକ୍‌ନୋଲଜିଗୁଡ଼ିକର (ITs) ସଦୁପଯୋଗ କରାଯିବାର ଯେଉଁ ପ୍ରଚୁର ସଂଭାବନା ରହିଛି, ତାହାକୁ ସେ ଆମ ଦେଶର ଗ୍ରାମାଞ୍ଚଳର ଉନ୍ନୟନ ଦିଗରେ ପ୍ରୟୋଗ କରିଛନ୍ତି । ବହୁବିଧ ତଥ୍ୟ-ଟେକ୍‌ନୋଲଜି, ଅଣପାରମ୍ପରିକ ଶକ୍ତି ଉତ୍ସ, ଟେଲିଯୋଗାଯୋଗ, ଅନୁପ୍ରଯୁକ୍ତି ବିଦ୍ୟା ବା ନାନୋଟେକ୍‌ନୋଲଜି ଭଳି ଅଳ୍ପ ବ୍ୟୟସାପେକ୍ଷ ତଥା ବିକେନ୍ଦ୍ରୀକରଣକ୍ଷମ ଟେକ୍‌ନୋଲଜିଗୁଡ଼ିକର ବିଚକ୍ଷଣ

ଉପଯୋଗ ବଳରେ ଆମ ଦେଶର ଗ୍ରାମାଞ୍ଚଳର ଉନ୍ନୟନକୁ ତ୍ୱରାନ୍ୱିତ କରାଯିବାର ଯେଉଁ ପ୍ରଚୁର ସଂଭାବନା ରହିଛି, ତାହାର ସାର୍ଥକ ବାସ୍ତବ ରୂପାୟନ ଦିଗରେ ସେ ପଥ ପ୍ରଦର୍ଶନକାରୀ ଭୂମିକାରେ ଅବତୀର୍ଣ୍ଣ ହୋଇଛନ୍ତି । ଗୋଟିଏ ଅଞ୍ଚଳର ବାସିନ୍ଦାମାନଙ୍କ ସ୍ଥିତାବସ୍ଥା ସଂପର୍କରେ ତାଙ୍କ ଅଧ୍ୟକ୍ଷତାର ପ୍ରସ୍ତୁତ ଡାଟାବେସ୍‌ଟିକୁ ସର୍ବସାଧାରଣଙ୍କ ଅବଗତି ନିମନ୍ତେ ଉନ୍ମୁକ୍ତ କରାଯାଇଛି । ଏତଦ୍ୱାରା ଏଥିରେ ଥିବା ଦୋଷ ବା ତ୍ରୁଟିଗୁଡ଼ିକୁ ମଧ୍ୟ ସଂଶୋଧନ କରାଯିବାର ଅବକାଶ ରହିଛି । ଏହି ଡାଟାବେସ୍‌ଟିକୁ ମୌଳିକ ଅବସ୍ଥାପନା ରୂପେ ଗ୍ରହଣ କରି ସେ ଗୋଟିଏ ଅଞ୍ଚଳର ଆଞ୍ଚଳିକ ସ୍ୱାତନ୍ତ୍ର୍ୟ ପରିପ୍ରେକ୍ଷୀରେ ସେଠାକାର ବାସିନ୍ଦାମାନଙ୍କର କ୍ରୟଶକ୍ତିର ଆବର୍ଦ୍ଧନ ପାଇଁ ନିଜ ଅନୁଷ୍ଠାନଟିକୁ ଗୋଟିଏ ଉଦ୍‌ପ୍ରେରକ ବା (Catalyst) ଭାବରେ ବ୍ୟବହାର କରୁଛନ୍ତି । ଜଣେ ଗରିବ ବା ନାମମାତ୍ର ଚାଷୀର ବା ଭୂମିହୀନ ଶ୍ରମିକର ଉପାର୍ଜନରେ ଅଭିବୃଦ୍ଧି ପାଇଁ ତାହାର ଶିକ୍ଷା ଦୀକ୍ଷା, ସ୍ୱାସ୍ଥ୍ୟ ଓ ରୁଚିକୁ ବିଚାରକୁ ନିଆଯାଇ ତା' ପାଇଁ ଆଉ ଗୋଟିଏ ଆୟକାରୀ ଧନ୍ଦା ଯୋଗାଇ ଦେବା ଦ୍ୱାରା ସେ ନିଶ୍ଚିତ ଭାବରେ ନିଜ ଆୟରେ ଅଭିବୃଦ୍ଧି ଘଟାଇ ପାରିବ । ଏହି ଅତିରିକ୍ତ ଧନ୍ଦାଟିକୁ ଚଳାଇବା ପାଇଁ ଯେଉଁ ପ୍ରକାର ତାଲିମ ଓ ଆର୍ଥିକ ସାହାଯ୍ୟର ଚାହିଦା ଉପୁଜୁଛି, ତାହାକୁ ଯୋଗାଇ ଦେବା ପାଇଁ ପୂର୍ବ ପ୍ରସ୍ତୁତ ଡାଟାବେସ୍‌ର ସାହାଯ୍ୟ ନେଇ ବେସରକାରୀ ଅନୁଷ୍ଠାନର କର୍ମକର୍ତ୍ତାମାନେ ସକ୍ରିୟ ଭୂମିକା ଗ୍ରହଣ କରିବେ । ଏହା ପରେ ସଂପୃକ୍ତ ବ୍ୟକ୍ତି ନିଜ ଉଦ୍ୟମ ବଳରେ ହିଁ ନିଜ ଆୟରେ ଅଭିବୃଦ୍ଧି ଦିଗରେ ଉଦ୍ୟମୀ ହେବେ । ଏତଦ୍ୱାରା 'ମା-ବାପା' ସରକାରଙ୍କ କୃପାଭିକ୍ଷୁ ହେବାର ଅବକାଶ ରହିବ ନାହିଁ । ନିଜ ଗୋଡ଼ରେ ନିଜେ ଦମ୍ଭଭାବରେ ଠିଆ ହୋଇ ପାରିବାର ଆତ୍ମ-ପ୍ରତ୍ୟୟ ସୃଷ୍ଟି ହେବା ପରେ ସଂପୃକ୍ତ ବ୍ୟକ୍ତି ନିଜ ଆର୍ଥିକ ଅବସ୍ଥାରେ ନିଶ୍ଚିତ ଭାବରେ ଅଭିବୃଦ୍ଧି ଘଟାଇ ପାରିବେ ।

ଗ୍ରାମାଞ୍ଚଳର ଦରିଦ୍ର ବାସିନ୍ଦାମାନଙ୍କ ଆୟକାରୀ ଶକ୍ତିର ଅଭିବୃଦ୍ଧି ଘଟାଇବା ପ୍ରତି କାହିଁକି ଅଗ୍ରାଧିକାର ଆରୋପିତ ହୋଇଛି ? ଏହା ଏକ ଅତୀବ ତାତ୍ପର୍ଯ୍ୟପୂର୍ଣ୍ଣ ପ୍ରଶ୍ନ । ଡକ୍ଟର ସ୍ୱାମୀନାଥନ ନିମ୍ନଲିଖିତ ପ୍ରାମାଣିକ ତଥ୍ୟରାଜି ପର୍ଯ୍ୟବେସିତ ଚିନ୍ତାଧାରାର ବଶବର୍ତ୍ତୀ ହୋଇ ଏପରି ଏକ ପରିକଳ୍ପନାକୁ ବାସ୍ତବ ରୂପ ଦେବାକୁ ପ୍ରୟାସୀ ହୋଇଛନ୍ତି । ଆମ ଦେଶର ପ୍ରାୟ ୭୨ ନିୟୁତ ପରିବାର ଦିନକୁ ଥରେ ମାତ୍ର ଖାଇବା ପାଇଁ ଜୀବନ-ସଂଗ୍ରାମରେ ବ୍ୟସ୍ତ ରହୁଛନ୍ତି । ଗ୍ରାମାଞ୍ଚଳର ଗରିବ ପରିବାରଗୁଡ଼ିକ ମୋଟ ଆୟର ପ୍ରାୟ ଶତକଡ଼ା ୮୨ ଭାଗ ଓ ସହରାଞ୍ଚଳର ସମଧର୍ମୀ ପରିବାରଗୁଡ଼ିକ ମୋଟ ଆୟର ପ୍ରାୟ ଶତକଡ଼ା ୭୮ ଭାଗ କେବଳ ଖାଦ୍ୟ ସମସ୍ୟାର ସମାଧାନ ଦିଗରେ ଖର୍ଚ୍ଚ କରନ୍ତି । ୱାର୍ଲଡ଼ ବ୍ୟାଙ୍କ ଦ୍ୱାରା ପ୍ରଣୀତ

ଗୋଟିଏ ରିପୋର୍ଟରୁ ଜଣା ପଡୁଛି ଯେ କୌଣସି ମତେ ବଂଚି ରହିବା ପାଇଁ ସେମାନେ ଦିନକୁ ଜଣ ପିଛା ୪୦୦ ଗ୍ରାମ ଚାଉଳ ବା ଗହମ, ୧୨୦ ଗ୍ରାମ ପରିବା ଓ ୪୦ ଗ୍ରାମ ଡାଲି ଖାଦ୍ୟ ରୂପେ ବ୍ୟବହାର କରନ୍ତି ।

ଆମ ଦେଶରେ ଖାଦ୍ୟଶସ୍ୟ ଉତ୍ପାଦନରେ ଯେଉଁ ଅଭିବୃଦ୍ଧି ଘଟୁଛି ଦରିଦ୍ର ବ୍ୟକ୍ତିମାନଙ୍କ କ୍ଷୁଧା ନିବାରଣ ବ୍ୟାପାରରେ ତଦନୁରୂପ ଅଭିବୃଦ୍ଧି ଘଟୁନାହିଁ । ଖାଦ୍ୟସଶ୍ୟର ଉତ୍ପାଦନ ବର୍ଷ ପିଛା ଆମ ଦେଶରେପ୍ରାୟ ୨୦୦ ନିୟୁତ ଟନରୁ ଅଧିକ ହେଲାଣି । ଏହି ଶତାବ୍ଦୀର ନବମ ଦଶକର ପ୍ରାରମ୍ଭରେ କେବଳ ଚୀନ ଦେଶକୁ ବାଦ୍ ଦେଲେ ଆମ ଦେଶରେ ଖାଦ୍ୟଶସ୍ୟର ଉତ୍ପାଦନରେ ଅଭିବୃଦ୍ଧିର ହାର ଇତର ଦେଶଗୁଡ଼ିକ ତୁଳନାରେ ଅଧିକ ହୋଇଛି । ମୋଟ ଦୁଗ୍ଧ ଉତ୍ପାଦନ ବ୍ୟାପାରରେ ଆମ ଦେଶ ମଧ ପୃଥିବୀର ଗୋଟିଏ ଅଗ୍ରଗଣ୍ୟ ରାଷ୍ଟ୍ର ଭାବରେ ପରିଗଣିତ ହେଉଛି । ମାତ୍ର ଆଶ୍ଚର୍ଯ୍ୟର କଥା ଯେ ଆମ ଦେଶର ଲକ୍ଷ ଲକ୍ଷ ପରିବାର ପ୍ରତି ତିନି ଦିନରେ ଏକ କପ୍ ଦୁଗ୍ଧ ପାଇ ପାରିବାକୁ ସମର୍ଥ ହେଉଛନ୍ତି ।

ଆମ ଦେଶର ବଳକା ଖାଦ୍ୟଶସ୍ୟକୁ ଗଚ୍ଛିତ କରିବା ପାଇଁ ଉପଯୁକ୍ତ ଖାଦ୍ୟ ଭଣ୍ଡାରଗୁଡ଼ିକର ଅଭାବ ଘଟୁଛି; ମାତ୍ର ସମକାଳୀନ ଭାବରେ କ୍ଷୁଧା ଓ ପରିପୁଷ୍ଟିର ଅଭାବ ଦରିଦ୍ର ବ୍ୟକ୍ତିମାନଙ୍କ ଜୀବନକୁ ଦୁର୍ବିସହ କରୁଛି । ପାଞ୍ଚ ବର୍ଷ ବୟସରୁ କମ୍ ଆୟୁସଂପନ୍ନ ମୋଟ ଶିଶୁମାନଙ୍କ ମଧ୍ୟରୁ ପ୍ରାୟ ଅର୍ଦ୍ଧେକ ଭାଗ ଶିଶୁଙ୍କ ଶରୀରର ପରିପୁଷ୍ଟି ସାଧନ ସଂଭବ ହେଉନାହିଁ; ଜନନୀମାନେ ରକ୍ତହୀନତା ଦ୍ୱାରା ପ୍ରପୀଡ଼ିତା ହୋଇଥିବା ଯୋଗୁଁ ଆମ ଦେଶର ନବଜାତ ଶିଶୁମାନଙ୍କ ମଧ୍ୟରୁ ପ୍ରାୟ ଏକ-ତୃତୀୟାଂଶଙ୍କ ଓଜନ ନ୍ୟୂନତମ ଚାହିଦା ତୁଳନାରେ କମ୍ ହେଉଛି ।

ବିଶେଷଜ୍ଞମାନେ ମତ ବ୍ୟକ୍ତ କରୁଛନ୍ତି ଯେ ଆମ ଦେଶରୁ କ୍ଷୁଧାର ଅପସାରଣ ଘଟାଇବା ଉଦ୍ଦେଶ୍ୟରେ ଗ୍ରାମାଞ୍ଚଳ ଓ ସହରାଞ୍ଚଳ ନିର୍ବିଶେଷରେ ଦରିଦ୍ର ବାସିନ୍ଦାଙ୍କ ଜୀବନ ଧାରଣର ଗୁଣାତ୍ମକ ମାନରେ ଅଭିବୃଦ୍ଧି ଘଟାଇବା ପାଇଁ ସେମାନଙ୍କ ଆୟ ଶକ୍ତିରେ ଅଭିବୃଦ୍ଧି ଘଟାଇବା ହିଁ ଅନୀବାର୍ଯ୍ୟ । ଏବଂବିଧ ମହନୀୟ ଲକ୍ଷ୍ୟ ହାସଲ ହେବ କିପରି ? ଆମ ଦେଶର କେତେକ ବେସରକାରୀ ସେବାକାରୀ ଅନୁଷ୍ଠାନ ଏହି ଗୁରୁତ୍ୱପୂର୍ଣ୍ଣ ସମସ୍ୟାଟିର ସମାଧାନ ଦିଗରେ ଯତ୍ନବାନ ହୋଇଛନ୍ତି । ଡକ୍ଟର ସ୍ୱାମୀନାଥନଙ୍କ ଦ୍ୱାରା ପରିକଳ୍ପିତ ଗ୍ଲୋବାଲ୍ ହଙ୍ଗର୍ ପ୍ରୋଜେକ୍ଟ ଏଗୁଡ଼ିକ ମଧ୍ୟରେ ଏକ ପ୍ରମୁଖ ଭୂମିକା ଗ୍ରହଣ କରିଛି । ସେ ଚାହୁଁଛନ୍ତି ଯେ ଦରିଦ୍ର ବ୍ୟକ୍ତିମାନଙ୍କୁ ଅତିରିକ୍ତ ଆୟକାରୀ ଧନ୍ଦା ଯୋଗାଇ ଦିଆଯିବା ଦ୍ୱାରା ସେମାନଙ୍କ ଆୟକାରୀ ସାମର୍ଥ୍ୟରେ ଅଭିବୃଦ୍ଧି ଘଟିପାରିବ ଏବଂ ଏତଦ୍ୱାରା ହିଁ ସେମାନଙ୍କୁ ଜୀବନ ଧାରଣର ସୁରକ୍ଷା ପ୍ରଦାନ କରାଯିବା ସଂଭବ ହେବ ।

ଗ୍ଲୋବାଲ୍ ହଙ୍ଗର୍ ପ୍ରୋଜେକ୍ଟ ଆନୁକୂଲ୍ୟରେ ପ୍ରଥମେ ତାମିଲନାଡୁର ୧୫୦ଟି ଗ୍ରାମର ଉନ୍ନୟନ ପାଇଁ ଆନୁଷଙ୍ଗିକ ପଦକ୍ଷେପଗୁଡ଼ିକୁ କାର୍ଯ୍ୟକାରୀ କରାଯାଇଛି । ଏହି ଗ୍ରାମଗୁଡ଼ିକରେ ଆର୍ଥିକ ସ୍ୱଚ୍ଛଳତା ଅନୁକ୍ରମରେ ବାସିନ୍ଦାମାନଙ୍କ ଶ୍ରେଣୀ ବିଭାଜନ କରାଯାଇଛି । ଡାଟାବେସ୍‌ରୁ ଜଣା ପଡୁଛି ଯେ କେଉଁ ପରିବାର କେତେ ପରିମାଣରେ ଚାଷଜମିର ଅଧିକାରୀ ହୋଇଛନ୍ତି । ଚାଷ ବ୍ୟତୀତ କେଉଁ ପରିବାର ଅନ୍ୟ କେଉଁ ଅତିରିକ୍ତ ଧନ୍ଦା ଅବଲମ୍ବନରେ ଗୁଜୁରାଣ ମେଣ୍ଟାଉଛନ୍ତି । ପ୍ରତ୍ୟେକ ପରିବାରର ସଂଖ୍ୟାନୁପାତରେ ଆୟ କେତେ ହେଉଛି ଏବଂ ସେଠାକାର କୃଷି, ପର୍ଯ୍ୟାବରଣ ଓ ଇତର ପ୍ରକୃତିଲବ୍‌ଧ କଞ୍ଚାମାଲଗୁଡ଼ିକ ମଧ୍ୟରୁ କାହାର କେଉଁ ପ୍ରକାରେ ସଦୁପଯୋଗ କରାଯିବା ଦ୍ୱାରା ଗୋଟିଏ ପରିବାରର ଆର୍ଥିକ ଅବସ୍ଥାରେ ଅଭିବୃଦ୍ଧି ଘଟାଯିବାର ସଂଭାବନା ରହିଛି । ରେଶମ ଚାଷ (Sericulture), ମତ୍ସ୍ୟଚାଷ, ଗୋପାଳନ, ବିଭିନ୍ନ ପ୍ରକାର ହସ୍ତଶିଳ୍ପ ପ୍ରଭୃତି ବୈଷୟିକ ଧନ୍ଦାଗୁଡ଼ିକୁ ଆୟ ବଢ଼ାଇବାର ଅବଲମ୍ବନ ଭାବରେ ବଛାଯାଇଛି । ଏ ପ୍ରକାର ଯାବତୀୟ ତଥ୍ୟରାଜି ସଂଗ୍ରହ କରାଯିବା ପରେ ସେବାକାରୀ ଅନୁଷ୍ଠାନର କର୍ମକର୍ତ୍ତାମାନେ ଦରିଦ୍ର ପୁରୁଷ ଓ ମହିଳାମାନଙ୍କୁ ଉପଯୁକ୍ତ ଧନ୍ଦା ସଂପର୍କରେ ବୈଷୟିକ ତାଲିମ ଯୋଗାଇ ଦେବାର ବ୍ୟବସ୍ଥା କରୁଛନ୍ତି ଏବଂ ତାଙ୍କ ପାଇଁ ଅଳ୍ପ ସୁଧରେ ଆର୍ଥିକ ଋଣ ପାଇ ପାରିବାର ସୁବିଧା ଯୋଗାଉଛନ୍ତି । ଏହାପରେ ସଂପୃକ୍ତ ପୁରୁଷ ଓ ମହିଳାମାନଙ୍କୁ ତାଲିମପ୍ରାପ୍ତ ଧନ୍ଦାଗୁଡ଼ିକୁ ଠିକଣାଭାବରେ କାର୍ଯ୍ୟକାରୀ କରିବା ଦିଗରେ ପ୍ରୋତ୍ସାହନ ଦିଆଯାଉଛି । ୧୫୦ଟି ଗ୍ରାମରେ ଏପରି ଉନ୍ନୟନ ପ୍ରକ୍ରିୟାର ଶୁଭାରମ୍ଭ ଘଟାଇବାର ବର୍ଷକ ମଧ୍ୟରେ ଲକ୍ଷ୍ୟ କରାଯାଉଛି ଯେ ଏବଂବିଧ କ୍ଷମତାର୍ପଣ (Empowerment) ବଳରେ ଗ୍ରାମାଞ୍ଚଳର ବାସିନ୍ଦାମାନଙ୍କ ଆର୍ଥିକ ଅବସ୍ଥାରେ ଲକ୍ଷ୍ୟଣୀୟ କ୍ରମୋନ୍ନତି ଘଟୁଛି ଏବଂ ସେମାନେ ଦ୍ୱିଗୁଣିତ ଉତ୍ସାହର ସହିତ ନିଜ ନିଜ ଉପାର୍ଜନ ବଢ଼ାଇବା ଦିଗରେ କର୍ମପ୍ରବଣ ହେଉଛନ୍ତି ।

[ଆମେ ଜାଣୁ ଯେ ପ୍ରାୟ ଅନୁରୂପ ବ୍ୟବସ୍ଥା ଅବଲମ୍ବନରେ ବାଙ୍ଗଲାଦେଶର ପ୍ରଫେସର ୟୁନୁସ୍ ନାମକ ଜଣେ ଅର୍ଥନୀତିଜ୍ଞ ସେଠାକାର ଗ୍ରାମାଞ୍ଚଳର ଉନ୍ନୟନ ଦିଗରେ ପଥପ୍ରଦର୍ଶନକାରୀ ଉଦ୍ୟମ ଚଳାଇଥିଲେ । ପ୍ରାୟ ଏକ ଦଶନ୍ଧି ପରେ ଲକ୍ଷ୍ୟ କରାଯାଉଛି ଯେ ତାଙ୍କ ଐତିହାସିକ ଉଦ୍ୟମ ଯୋଗୁଁ ବାଙ୍ଗଲାଦେଶର ଗ୍ରାମାଞ୍ଚଳର ଅର୍ଥନୈତିକ ପ୍ରଗତି କ୍ଷେତ୍ରରେ 'ଗ୍ରାମୀଣ ବ୍ୟାଙ୍କ' ଏକ ପ୍ରମୁଖ ଭୂମିକା ଗ୍ରହଣ କରିଛି । ଏହି ବ୍ୟବସ୍ଥା ଯୋଗୁଁ ମହିଳାମାନେ ହିଁ ବିଶେଷ ଉପକୃତ ହୋଇଛନ୍ତି । ଅଳ୍ପ ସୁଧରେ ଋଣ ସଂଗ୍ରହ କରି ସେମାନେ ବିଭିନ୍ନ ପ୍ରକାର ଧନ୍ଦାକୁ ଲାଭପ୍ରଦ ମାର୍ଗରେ ପରିଚାଳନା କରୁଛନ୍ତି । ଏପରି କ୍ଷମତାର୍ପଣ ବଳରେ

ପରିବାରର ଭରଣ ପୋଷଣ ବ୍ୟାପାରରେ ସେମାନେ ପ୍ରଭାବଶାଳୀ ଭୂମିକା ଗ୍ରହଣ କରୁଥିବାରୁ ରକ୍ଷଣଶୀଳ ସମାଜରେ ମହିଳାମାନଙ୍କୁ ଉପେକ୍ଷା କରାଯିବାର ଅସୁସ୍ଥ ପରମ୍ପରାଟିର ଅପସାରଣ ସଂଭବ ହୋଇଛି ଏବଂ ସମକାଳୀନ ଭାବରେ ପିଲାମାନଙ୍କ ଶିକ୍ଷା ଦୀକ୍ଷା ଓ ସ୍ୱାସ୍ଥ୍ୟର ସୁରକ୍ଷା ଦିଗରେ ବିହୀତ ପଦକ୍ଷେପଗୁଡ଼ିକୁ କାର୍ଯ୍ୟକାରୀ କରିବା ବ୍ୟାପାରରେ ଆର୍ଥିକ ଅନାଟନ ଅନ୍ତରାୟ ସୃଷ୍ଟି କରୁନାହିଁ ।]

ଆମ ଦେଶର ତାମିଲନାଡୁ ରାଜ୍ୟର ମଦୁରାଇ, ପେରିୟାର ଓ ସାଲେମ ଜିଲ୍ଲାମାନଙ୍କରେ ଏପରି ଉନ୍ନୟନମୂଳକ କାର୍ଯ୍ୟକ୍ରମଗୁଡ଼ିକୁ କାର୍ଯ୍ୟକାରୀ କରାଯାଉଥିବା ବେଳେ 'ଗ୍ଲୋବାଲ୍ ହଙ୍ଗର୍ ପ୍ରୋଜେକ୍ଟ'ର ସ୍ୱେଚ୍ଛାସେବୀମାନେ ଲକ୍ଷ୍ୟ କଲେ ଯେ ସେହି ଅଞ୍ଚଳମାନଙ୍କରେ ଏକ ଅବାଞ୍ଛିତ ପରମ୍ପରା ମୁଣ୍ଡ ଟେକିଛି । କନ୍ୟା ସନ୍ତାନଟି ଜନ୍ମ ହେବାର ପ୍ରାକ୍‌ସୂଚନା ପାଇବା ପରେ ଅନେକ ମହିଳା ଭ୍ରୂଣଟିକୁ ନଷ୍ଟ କରି ଦେଉଛନ୍ତି । କନ୍ୟା ସନ୍ତାନ ପ୍ରତି ବିଶେଷଭାବରେ ସେଠାକାର ନାରୀ ସମାଜରେ ଏକ ବିତୃଷ୍ଣା ଭାବ ଜାତ ହୋଇଛି । ପୁରୁଷମାନେ ଏଥିପ୍ରତି ଉଦାସୀନ ରହିବାକୁ ଶ୍ରେୟସ୍କର ମଣିଛନ୍ତି । ସର୍ବେକ୍ଷଣ ଫଳରେ ଜଣାଗଲା ଯେ ମହିଳାମାନେ କେବଳ ଦାରିଦ୍ର୍ୟ ଯୋଗୁଁ ଏପରି ଘୃଣ୍ୟ ବ୍ୟାପାରରେ ଜଡ଼ିତ ହୋଇନାହାନ୍ତି । ସେଠାକାର ପ୍ରୌଢ଼ ଓ ବୃଦ୍ଧାମାନଙ୍କ ମତାନୁଯାୟୀ ଏହି ଶତାବ୍ଦୀର ପଞ୍ଚ ଦଶକ ଓ ଷଷ୍ଠ ଦଶକ ପର୍ଯ୍ୟନ୍ତ ମଧ୍ୟ ଏପରି ଜଘନ୍ୟ ବ୍ୟାପାରର ସୂତ୍ରପାତ ଘଟି ନଥିଲା । ମାତ୍ର ଏବେ ଲୋକମାନେ ନିଜ ନିଜ କ୍ରମବର୍ଦ୍ଧମାନ କାମନା ପୂରଣ ପାଇଁ ତଥା ଜାକ ଜମକରେ ବିବାହ ଉତ୍ସବ ଅନୁଷ୍ଠିତ କରାଇବା ପାଇଁ କନ୍ୟା ପକ୍ଷଙ୍କଠାରୁ ପ୍ରଚୁର ଯୌତୁକ ଦାବୀ କରୁଛନ୍ତି । କନ୍ୟାମାନଙ୍କୁ ବିବାହ କରାଇବା ଗୋଟିଏ ଅତୀବ ବ୍ୟୟବହୁଳ ବ୍ୟାପାରରେ ପରିଣତ ହୋଇଛି । ଏହି କୁପ୍ରଥାଟି ବନ୍ଦ ନ ହେବା ପର୍ଯ୍ୟନ୍ତ ମହିଳାମାନଙ୍କୁ ଏପରି ଜଘନ୍ୟ ବ୍ୟାପାରରୁ ନିବର୍ତ୍ତାଇବା ସମ୍ଭବ ହେବ ନାହିଁ । ଏବଂବିଧ ଉପଲବ୍ଧି ମିଳିବା ପରେ ସଂପୃକ୍ତ ସ୍ୱେଚ୍ଛାସେବକମାନେ ସ୍ଥାନୀୟ ମୁରବୀମାନଙ୍କ ସହଯୋଗ ବଳରେ ଯୌତୁକ ପ୍ରଥାର ନିରାକରଣ ଦିଗରେ ଯତ୍ନବାନ ହୋଇଛନ୍ତି । ଏଥିରୁ ଜଣାପଡୁଛି ଯେ କ୍ଷମତାର୍ପଣ ବଳରେ ଜନସାଧାରଣଙ୍କ ଅର୍ଥନୈତିକ ପ୍ରଗତିର ପଥକୁ ସୁଗମ୍ୟ କରାଯିବା ଅବସରରେ ସମାଜରୁ କୁସଂସ୍କାରଗୁଡ଼ିକର ବିଲୋପ ସାଧନ ମଧ୍ୟ ସମ୍ଭବ ହୋଇପାରିବ ।

ଡକ୍ଟର ଆର୍. କେ. ପାଚାଉରୀ, ଅନୀଲ ଅଗରୱାଲ ଓ ଡକ୍ଟର ଏମ୍. ଏସ୍. ସ୍ୱାମୀନାଥନ ପ୍ରମୁଖ ପ୍ରବୀଣ ବିଦ୍ୱାନ ସଙ୍ଗଠକମାନେ ବର୍ତ୍ତମାନ ଆମ ଦେଶର

ଜାତୀୟ ପ୍ରଗତିର ପଥକୁ ଜନହିତକାରୀ ଓ ପର୍ଯ୍ୟାବରଣର ପରିପୋଷଣକାରୀ ମାର୍ଗରେ ପରିଚାଳନା କରିବାର ଯେଉଁ ମାର୍ଗ ନିର୍ଦ୍ଦେଶନ କରିଛନ୍ତି, ତାହା ଯୁବସମାଜ ପାଇଁ ପ୍ରେରଣା-ପ୍ରଦାୟକ ତଥା ଅନୁକରଣୀୟ ହୋଇଛି । ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ଆଧୁନିକ ଅବଦାନଗୁଡ଼ିକର ସାହାଯ୍ୟ ନେଇ ତଥା ନୂଆ ନୂଆ ପରିଚାଳନା – କୌଶଳଗୁଡ଼ିକୁ ପ୍ରୟୋଗ କରି ମନୁଷ୍ୟର ବ୍ୟବହାରଯୋଗ୍ୟ ଦ୍ରବ୍ୟ ଓ ଉପକରଣଗୁଡ଼ିକୁ ଜନସାଧାରଣଙ୍କ ପ୍ରତ୍ୟକ୍ଷ ସହଯୋଗ ବଳରେ ଉତ୍ପାଦନ କରାଯିବାର ଯେଉଁ ପ୍ରଚୁର ସମ୍ଭାବନା ରହିଛି ଏବଂ ଆମ ଦେଶର ଜୈବ-ବିବିଧତାର ପ୍ରାଚୁର୍ଯ୍ୟ ପରିପ୍ରେକ୍ଷୀରେ ଏହି ସମ୍ଭାବନାର ବାସ୍ତବ ରୂପାୟନ ପାଇଁ ଯେଉଁ ପ୍ରକାର କର୍ମକୁଶଳତାର ଚାହିଦା ଉପୁଜୁଛି, ତାହା କେବଳ ଉପଯୁକ୍ତ ଶିକ୍ଷା ଦୀକ୍ଷା ପ୍ରାପ୍ତ ଯୁବସମାଜ ଦ୍ୱାରା ହିଁ ସମ୍ପାଦିତ ହୋଇ ପାରିବାର ଅବକାଶ ରହିଛି । ଆମେ ଆଶା କରିବା ଯେ ଏକବିଂଶ ଶତାବ୍ଦୀରେ ଆମ ରାଜ୍ୟର ଚେତନଶୀଳ ଯୁବସମାଜ ଏପରି ମହାନ୍ ଜୀବନାଦର୍ଶର ଅନୁଗାମୀ ହୋଇ ଦେଶ ମାତୃକାର ସେବା କରିବେ ଏବଂ ବିଶ୍ୱ ଦରବାରରେ ଆମ ଦେଶକୁ ଗୋଟିଏ ସୁଖଶାନ୍ତିମୟ ସମୃଦ୍ଧ ରାଷ୍ଟ୍ର ଭାବରେ ପ୍ରତିଷ୍ଠା କରିବାକୁ ସମର୍ଥ ହେବେ ।



# ଉପସଂହାର

ଗଣତାନ୍ତ୍ରିକ ଶାସନର ସୁଫଳ ଉପଭୋଗ କରିବା ପାଇଁ ଆମ ଦେଶରେ ଜନହିତକାରୀ ଅନୁଷ୍ଠାନଗୁଡ଼ିକର ପ୍ରତିଷ୍ଠା ଓ ସେଗୁଡ଼ିକର ବିଧିବଦ୍ଧ କ୍ରିୟାଶୀଳତା ପ୍ରତି ପ୍ରାଧାନ୍ୟ ଆରୋପ କରାଯିବାର ବାଞ୍ଛନୀୟତା ଅନାୟାସରେ ଉପଲବ୍ଧ ହେଉଛି । ସାରା ଦେଶରେ ସାମାଜିକ ନ୍ୟାୟର ପ୍ରତିଷ୍ଠା ସମ୍ଭବ ହେବା ସଙ୍ଗେ ସଙ୍ଗେ ସମସ୍ତଙ୍କୁ ଅନ୍ତର୍ନିହତ ପ୍ରତିଭାର ସୁସଂଯତ ବିକାଶ ଓ ଉପଯୋଗ ପାଇଁ ଏକାଭଳି ସୁବିଧା ଯୋଗାଇ ଦେବାର ଔଚିତ୍ୟକୁ ମଧ୍ୟ ଆମ୍ଭେମାନେ ଅନାୟାସରେ ହୃଦୟଙ୍ଗମ କରୁଛୁ । ଜନସାଧାରଣଙ୍କ ଉତ୍ପାଦନ-କ୍ଷମତାରେ ଅଭିବୃଦ୍ଧି ଘଟାଇବା ପାଇଁ, ସର୍ବବିଧ ଉତ୍ପାଦନ ବ୍ୟାପାରରେ ସେମାନଙ୍କ ନିଷ୍ଠା ତଥା କାର୍ଯ୍ୟଦକ୍ଷତାକୁ ଅର୍ଥସୂଚକ ମାର୍ଗରେ ସାମିଲ କରାଇବା ପାଇଁ ଏବଂ ଯଥାର୍ଥ କ୍ଷମତାର୍ପଣ ବଳରେ ସେମାନଙ୍କୁ ନିଜ ନିଜ ଉଦ୍ୟମ ବିନିମୟରେ ନିଜ ନିଜ ଜୀବନ ଧାରଣର ମାନରେ ଉନ୍ନତି ଘଟାଇବାର ସାମର୍ଥ୍ୟ ଯୋଗାଇ ଦେବା ପାଇଁ ଯେଉଁ ପ୍ରକାର କର୍ମାଭିମୁଖ୍ୟ ଓ କର୍ମ-ପଦ୍ଧତିର ଚାହିଦା ଉପୁଜୁଛି, ତାହାକୁ କେବଳ ସୁସ୍ଥ ତଥା ସୁଦୃଢ଼ ଜନମତର ଚାପରେ ହିଁ ସରକାର କାର୍ଯ୍ୟକାରୀ କରାଇବାକୁ ସମର୍ଥ ହେବେ । ଏହି ବ୍ୟାପାରରେ ବେସରକାରୀ ସେବାକାରୀ ଅନୁଷ୍ଠାନଗୁଡ଼ିକ ଏକ ମହତ୍ତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରି ପାରିବେ । ଜନମତକୁ ସୁସଙ୍ଗଠିତ କରାଇବା ପାଇଁ, ଜନସାଧାରଣଙ୍କ ଶିକ୍ଷା, ଦୀକ୍ଷା ଓ ସ୍ୱାସ୍ଥ୍ୟର ସୁରକ୍ଷା ପାଇଁ, ସେମାନଙ୍କୁ ଆୟକାରୀ ଧନ୍ଦା ଯୋଗାଇ ଦେବା ପାଇଁ ତଥା ପ୍ରଗତିଶୀଳ ବ୍ୟାପାରଗୁଡ଼ିକୁ ପରିବେଶ ଓ ପର୍ଯ୍ୟାବରଣର ସଂରକ୍ଷଣକାରୀ ଓ ସୁରକ୍ଷା ପ୍ରଦାନକାରୀ ମାର୍ଗରେ ପରିଚାଳନା କରିବା ପାଇଁ ସେବାକାରୀ ଅନୁଷ୍ଠାନଗୁଡ଼ିକ ହିଁ ଆମ ଦେଶର ବିଭିନ୍ନ ଅଞ୍ଚଳରେ ସମୟୋଚିତ ପଦକ୍ଷେପଗୁଡ଼ିକୁ ସ୍ଥାନୀୟ ବାସିନ୍ଦାମାନଙ୍କ ସହଯୋଗ ବଳରେ କାର୍ଯ୍ୟକାରୀ କରାଇ ପାରିବେ । ଭବିଷ୍ୟତରେ ଏହି ଅନୁଷ୍ଠାନଗୁଡ଼ିକ ଏବଂବିଧ ବ୍ୟାପାରଗୁଡ଼ିକୁ ଠିକଣାଭାବରେ କାର୍ଯ୍ୟକାରୀ କରାଇବା ପାଇଁ ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର

ଅବଦାନଗୁଡ଼ିକୁ ଅତୀବ ଦକ୍ଷତାର ସହିତ ବ୍ୟବହାର କରି ପାରିବେ । ବିକେନ୍ଦ୍ରୀକୃତ ମାର୍ଗରେ ଅପେକ୍ଷାକୃତ ଅଳ୍ପ ବ୍ୟୟସାପେକ୍ଷ ତଥା ପୂର୍ବାପେକ୍ଷା ଅଧିକ ଲାଭପ୍ରଦ ଉତ୍ପାଦନ-ବ୍ୟବସ୍ଥାଗୁଡ଼ିକୁ ତାଲିମପ୍ରାପ୍ତ ଜନସାଧାରଣଙ୍କ ସହଯୋଗ ବଳରେ କାର୍ଯ୍ୟକାରୀ କରାଇବା ଦ୍ୱାରା ପରିବେଶର ସୁରକ୍ଷା ସମ୍ଭବ ହେବା ସଙ୍ଗେ ସଙ୍ଗେ ଜାତୀୟ ଉତ୍ପାଦନରେ ମଧ୍ୟ ଅଭିବୃଦ୍ଧି ଘଟିବ । ଯେଉଁ ସଙ୍ଗଠନ, ପରିଚାଳକ ବା ତତ୍ତ୍ୱାବଧାରକମାନେ ଏପରି ସେବାକାରୀ ଅନୁଷ୍ଠାନଗୁଡ଼ିକୁ ପ୍ରତିଷ୍ଠା କରିବେ, ସେମାନେ ମଧ୍ୟ ସମାଜରେ ମର୍ଯ୍ୟାଦା ପ୍ରାପ୍ତି ତଥା ଆର୍ଥିକ ଦୃଷ୍ଟିରୁ ସ୍ୱଚ୍ଛଳ ଜୀବନ ଯାପନ କରି ପାରିବେ । ଏଥିପାଇଁ ପୂର୍ବରୁ ସୂଚାଇ ଦିଆଯାଇଛି ଯେ, ଭବିଷ୍ୟତରେ ଏ ପ୍ରକାର ବେସରକାରୀ ସେବାକାରୀ ଅନୁଷ୍ଠାନଗୁଡ଼ିକ ହିଁ ଆମ ଦେଶର ପ୍ରଗତିଶୀଳତାର ପଥକୁ ସୁଗମ୍ୟ ତଥା ସତ୍‌ପଥଗାମୀ କରାଇ ପାରିବେ ଏବଂ ଆମ ଦେଶର ଜ୍ଞାନୀ, ଗୁଣୀ, ସତ୍ୟନିଷ୍ଠ ତଥା କାର୍ଯ୍ୟଦକ୍ଷ ଯୁବକ ଯୁବତୀମାନେ ସ୍ୱଇଚ୍ଛାରେ ସେବାକାରୀ ଅନୁଷ୍ଠାନଗୁଡ଼ିକରେ ଯୋଗଦାନ କରିବା ଦ୍ୱାରା ନିଜ ନିଜ ପ୍ରତିଭା, ନବୀକରଣକ୍ଷମତା ଓ କାର୍ଯ୍ୟଦକ୍ଷତାର ସଦୁପଯୋଗ କରିବା ପାଇଁ ବିଶେଷ ସୁବିଧା ପାଇ ପାରିବା ସଙ୍ଗେ ସଙ୍ଗେ ନିଜ ନିଜ କୃତକର୍ମଗୁଡ଼ିକ ଯୋଗୁଁ ଆତ୍ମସନ୍ତୋଷ ମଧ୍ୟ ପାଇ ପାରିବେ ।

ଏଠାରେ ସୂଚାଇଦେବା ଅତୀବ ପ୍ରାସଙ୍ଗିକ ବୋଧ ହେଉଛି ଯେ, ପ୍ରାୟ ଦୁଇ ଦଶନ୍ଧି ବ୍ୟାପୀ ଆମ ଦେଶରେ ଏ ରୂପ କେତେକ ସେବାକାରୀ ସଙ୍ଗଠନ ଜନହିତକାରୀ ବ୍ୟାପାରଗୁଡ଼ିକୁ ବେଶ୍ ଦକ୍ଷତାର ସହିତ ସମ୍ପାଦନ କରୁଛନ୍ତି । ସେମାନଙ୍କ ଅସାମାନ୍ୟ ତଥା ଅନୁକରଣୀୟ କୃତିତ୍ୱ ସମ୍ବନ୍ଧରେ ମଧ୍ୟ ଏହି ପୁସ୍ତକରେ ସମ୍ୟକ୍ ସୂଚନା ପ୍ରଦତ୍ତ ହୋଇଛି । ମାତ୍ର ଏବେ ସାରା ଦେଶରେ ଲକ୍ଷ୍ୟ କରାଯାଉଛି ଯେ ଛତୁ ଫୁଟିବା ଭଳି ସେବାକାରୀ ସଂଗଠନଗୁଡ଼ିକର ସଂଖ୍ୟା ମଧ୍ୟ ବଢ଼ିବାରେ ଲାଗିଛି । ସମକାଳୀନ ଭାବରେ ଆମ ଦେଶରେ ବର୍ତ୍ତମାନ ନୈତିକତାର ଦାରୁଣ ଅଭାବ ପରିଲକ୍ଷିତ ହେଉଛି । ଦୁର୍ନୀତିମୟ ତଥା ବ୍ୟଭିଚାରଗ୍ରସ୍ତ ପରିବେଶରୁ ଫାଇଦା ଉଠାଇବା ପାଇଁ ଅନେକେ ବୈୟକ୍ତିକ ତଥା ସାଙ୍ଗଠନିକ ମାର୍ଗରେ ବିଭିନ୍ନ ଖଳ ପନ୍ଥାର ଆଶ୍ରୟ ନେଉଛନ୍ତି । ପରିବେଶୀୟ ପ୍ରଦୂଷଣର ପ୍ରତିକାରକୁ ବାହାନା କରି ମଧ୍ୟ ଆମ ଦେଶରେ ଅନେକେ ଗୋଟିଏ ଗୋଟିଏ ସେବାକାରୀ ଅନୁଷ୍ଠାନ ପ୍ରତିଷ୍ଠା କରୁଛନ୍ତି । ସ୍ୱଦେଶୀ ସରକାରଙ୍କ ରାଜକୋଷରୁ କିମ୍ୱା ବୈଦେଶିକ ସାହାଯ୍ୟ ପ୍ରଦାନକାରୀ ସଂସ୍ଥାଗୁଡ଼ିକଠାରୁ ସେମାନେ ବିଭିନ୍ନ ପରିବେଶର ସୁରକ୍ଷାକାରୀ ଦାୟିତ୍ୱ ସମ୍ପାଦନ କରିବା ବାହାନାରେ ପ୍ରଚୁର ଅର୍ଥ ପାଉଛନ୍ତି । ଅନେକେ ମଧ୍ୟ ସ୍ୱଦେଶୀ ରାଜନୈତିକ ନେତୃବର୍ଗଙ୍କ ଅନୁମୋଦନ

ବଳରେ ବାରମ୍ବାର ବିଦେଶ ଯାତ୍ରା କରୁଛନ୍ତି । ମାତ୍ର କାର୍ଯ୍ୟ କ୍ଷେତ୍ରରେ ଲକ୍ଷ୍ୟ କରାଯାଉଛି ଯେ ଏହି ଅନୁଷ୍ଠାନଗୁଡ଼ିକ ସ୍ଥାନୀୟ ଜନସାଧାରଣ ଉପକୃତ ହେବା ଭଳି କୌଣସି ପ୍ରଭାବଶାଳୀ ବା ଲକ୍ଷ୍ୟଣୀୟ ପଦକ୍ଷେପ ଗ୍ରହଣ କରୁ ନାହାନ୍ତି । ସର୍ବବିଧ ପ୍ରଚାରଧର୍ମୀ ସଭା ସମିତି ଓ ଗପ୍ପ ବବାଦରେ ପ୍ରଚୁର ଅର୍ଥ ବ୍ୟୟ କରାଯାଉଛି । ରାଜନୀତି କ୍ଷେତ୍ରରେ ବିଫଳ ବା ଅପବାଦିତ ହୋଇଥିବା କେତେକ ନେତା ଓ ଅବସରପ୍ରାପ୍ତ ପ୍ରଶାସକମାନେ ମଧ୍ୟ ପରିବେଶର ବିପର୍ଯ୍ୟୟକୁ ନିଜ ନିଜ ସ୍ୱାର୍ଥ ସାଧନର ଗୋଟିଏ ଗୋଟିଏ ଅମୋଘ ଅସ୍ତ୍ର ଭାବରେ ବ୍ୟବହାର କରୁଛନ୍ତି । ଗୋଟିଏ ସେବାକାରୀ ଅନୁଷ୍ଠାନ ପ୍ରତିଷ୍ଠା କରିବା ସେମାନଙ୍କ ପକ୍ଷରେ ଅତି ସହଜ ହେଉଛି ଏବଂ ସ୍ଥାନୀୟ ବାସିନ୍ଦାମାନଙ୍କୁ ଭଣ୍ଡାଇ ବା ହତଚକିତ କରି ସେମାନେ ନିଜ ହାତ ଚିକ୍କଣ କରୁଛନ୍ତି । ପୁଣି, ଲକ୍ଷ୍ୟ କରାଯାଉଛି ଯେ, ବଡ଼ ବଡ଼ ଶିଳ୍ପପତି, ଉଚ୍ଚ କ୍ଷମତାସମ୍ପନ୍ନ ପ୍ରଶାସକ ଓ ସମାଜର ପ୍ରତିପତ୍ତିଶାଳୀ ବ୍ୟକ୍ତିମାନଙ୍କ ଧର୍ମପତ୍ନୀ ବା ଆତ୍ମୀୟାମାନେ ଏବେ ଗୋଟିଏ ଗୋଟିଏ ତଥାକଥିତ ସେବାକରୀ ଅନୁଷ୍ଠାନ ପ୍ରତିଷ୍ଠା କରିବାକୁ ବିଶେଷ ଆଗ୍ରହୀ ହେଉଛନ୍ତି । ଏହାକୁ ସକ୍ରିୟ କରାଇବା ଉଦ୍ଦେଶ୍ୟରେ ସେମାନେ ଚତୁର କାରସାଦୀ ପ୍ରୟୋଗ କରି ସରକାରୀ ତଥା ବେସରକାରୀ ସୂତ୍ରରୁ ପ୍ରଚୁର ଅର୍ଥ ପାଉଛନ୍ତି । ଏମାନଙ୍କ ମୁଖ୍ୟ ଉଦ୍ଦେଶ୍ୟ ହେଉଛି ସମାଜ କଲ୍ୟାଣ ବାହାନାରେ ଆତ୍ମପ୍ରଚାର କରାଇବା । ଏମାନେ ହିଁ ଅତି ଚତୁର ଭାବରେ ଜାତୀୟ ଦୂରଦର୍ଶନକୁ ତଥା ଅନ୍ୟାନ୍ୟ ଟି.ଭି. ଚାନେଲଗୁଡ଼ିକୁ ନିଜ ନିଜର ହାତବାଗିସି ଭାବରେ ପ୍ରୟୋଗ କରୁଛନ୍ତି । ଆଧୁନିକ ବେଶଭୂଷାରେ ସଜ୍ଜିତା ଏପରି ପ୍ରଚାରଧର୍ମୀ ସଙ୍ଗଠନଗୁଡ଼ିକର ସଙ୍ଗଠିକା ବା ପରିଚାଳିକାମାନଙ୍କ ରୂପ ଲାବଣ୍ୟକୁ ଆମେ ବାରମ୍ବାର ଜାତୀୟ ତଥା ଆଞ୍ଚଳିକ ସମ୍ବାଦ ପରିବେଷଣ ବେଳେ ଦେଖି ପାରୁଛୁ । ମାତ୍ର ଏମାନେ କେଉଁ କର୍ମାଭିମୁଖ୍ୟ ଘେନି କେଉଁ ପ୍ରକାରେ ସମାଜର କଲ୍ୟାଣ କରୁଛନ୍ତି, ତାହାର ଖବର କାହାକୁ ଜଣା ନାହିଁ । କେତୋଟି ସଭା ବା ସାଂସ୍କୃତିକ ଉତ୍ସବ ଜରିଆରେ ବଡ଼ ବଡ଼ ନେତା ବା ବିଶିଷ୍ଟ ବ୍ୟକ୍ତିମାନଙ୍କ ଗହଣରେ ଫଟୋ ଉଠାଇବା ଏବଂ ଗଣମାଧ୍ୟମଗୁଡ଼ିକରେ ଏଗୁଡ଼ିକୁ ପ୍ରସାରିତ କରାଇବା ହିଁ ଏମାନଙ୍କର ମୁଖ୍ୟ ଉଦ୍ଦେଶ୍ୟ । ନିରକ୍ଷରତା ଓ ଦାରିଦ୍ର୍ୟ ପ୍ରପୀଡ଼ିତ ଏବଂ ଦୁର୍ନୀତିଗ୍ରସ୍ତ ଦେଶରେ ଉପଭୋଗୀ ଗୋଷ୍ଠୀ ସୁବିଧାବାଦୀ ଆଚରଣ ବଳରେ ଏପରି ଭାବରେ କ୍ରିୟାଶୀଳ ହେବା କିଛି ଅସ୍ୱାଭାବିକ ବୋଧ ହେଉନାହିଁ ।

ଏବେ ପୁଣି ଲକ୍ଷ୍ୟ କରାଗଲାଣି ଯେ ଆମ ଦେଶରେ ପର୍ଯ୍ୟାବରଣୀୟ ଶରଣାର୍ଥୀମାନଙ୍କ (eco-refugees) ସଂଖ୍ୟା ବଢ଼ିବା ଅନୁପାତରେ ପର୍ଯ୍ୟାବରଣୀୟ ସନ୍ତ୍ରାସବାଦୀମାନଙ୍କ (eco-terrorists) ସଂଖ୍ୟା ବଢ଼ିବାରେ

ଲାଗିଛି । ଯେ କୌଣସି ପ୍ରଗତିମୂଳକ କାର୍ଯ୍ୟର ଅୟମାରମ୍ଭ ଘଟିବା କ୍ଷଣି ଏମାନେ ତାହା ବିରୋଧରେ ପରିବେଶୀୟ ପ୍ରଦୂଷଣର ଆଳ ଦେଖାଇ ଆନ୍ଦୋଳନ ବା ଉତ୍ତେଜନା ସୃଷ୍ଟି କରୁଛନ୍ତି । ସେହି କାର୍ଯ୍ୟକ୍ରମଟିକୁ ସ୍ଥଗିତ କିମ୍ବା ବିଳମ୍ବିତ କରାଇବା ପାଇଁ ଏମାନେ ନ୍ୟାୟାଳୟର ଶରଣାପନ୍ନ ହେବାକୁ ମଧ୍ୟ କୁଣ୍ଠା ବୋଧ କରୁନାହାନ୍ତି । ନ୍ୟାୟାଳୟଗୁଡ଼ିକରେ ତଳୁ ଉପର ପର୍ଯ୍ୟନ୍ତ, ଅର୍ଥାତ୍ ହାଇକୋର୍ଟଠାରୁ ସୁପ୍ରିମ୍‌କୋର୍ଟ ପର୍ଯ୍ୟନ୍ତ, ନିଷ୍ପତ୍ତିମୂଳକ ସମାଧାନ ମିଳିବା ବ୍ୟାପାରରେ ପ୍ରଚୁର ସମୟ ଅତିବାହିତ ହେଉଛି । କୌଣସି ବେସରକାରୀ ବ୍ୟାବସାୟିକ ସଂସ୍ଥାର ବିରୋଧୀ ପକ୍ଷ ଏପରି କାର୍ଯ୍ୟ ତୁଲାଇବା ପାଇଁ ସନ୍ତ୍ରାସବାଦୀମାନଙ୍କୁ ଯୋଗାଡ଼ କରୁଛନ୍ତି । ଏପରି ଘୃଣ୍ୟ ବ୍ୟାପାର ଚଳାଇବା ପାଇଁ ବହୁଦେଶୀୟ କର୍ପୋରେସନଗୁଡ଼ିକ ମଧ୍ୟ ଆମଦେଶରେ ଅର୍ଥଲୋଭୀ ସନ୍ତ୍ରାସବାଦୀମାନଙ୍କୁ ନିଯୁକ୍ତ କରିବା ଅସ୍ୱାଭାବିକ ବୋଧ ହେଉନାହିଁ । ଏତଦ୍ୱାରା ଯେଉଁ କ୍ଷେତ୍ରରେ ପରିବେଶୀୟ ପ୍ରଦୂଷଣର ଆଶଙ୍କା ନାହିଁ କିମ୍ବା ଯେଉଁ ବ୍ୟାପାରରେ ପରିବେଶ ଓ ଜଙ୍ଗଲ ମନ୍ତ୍ରଣାଳୟର ପ୍ରାକ୍‌ସ୍ୱୀକୃତି ନିଆଯାଇଛି, ସେଗୁଡ଼ିକୁ ମଧ୍ୟ ଅଯଥା ବିଳମ୍ବିତ କରାଯାଉଛି । ଏଥିପାଇଁ ଜାତୀୟ ପ୍ରଗତି ପଥରେ ଗୁରୁତର ବାଧା ସୃଷ୍ଟି ହେଉଛି । ଅଧିକାଂଶ କ୍ଷେତ୍ରରେ ଗଣମାଧ୍ୟମଗୁଡ଼ିକ ଜରିଆରେ ଏ ପ୍ରକାର ଘଟଣାପ୍ରବାହକୁ ଏପରି ରୋମାଞ୍ଚକାରୀ ମାର୍ଗରେ ବିଜ୍ଞାପିତ କରାଯାଉଛି ଯେ ସାଧାରଣ ଲୋକେ ଜାତୀୟ ପ୍ରଗତିଶୀଳତାକୁ ପରିବେଶର ପରିପନ୍ଥୀ ଭାବରେ ବିଚାର କରୁଛନ୍ତି । ଜନମାନସରେ ଏହା ବିଭ୍ରାନ୍ତିକର ପ୍ରତିକ୍ରିୟା ସୃଷ୍ଟି କରୁଛି । ନ୍ୟାୟାଳୟଗୁଡ଼ିକ ପରିବେଶର କ୍ଷତି ସାଧନ କରୁଥିବା ବ୍ୟକ୍ତି ବା ଅନୁଷ୍ଠାନଗୁଡ଼ିକ ପ୍ରତି ଯେପରି ଦଣ୍ଡବିଧାନ କରୁଛନ୍ତି, ମିଥ୍ୟା ପ୍ରମାଣିତ ହେବାପରେ ପବ୍ଲିକ୍ ଇ□ରେଷ୍ଟ ଲିଟିଗେସନର ଅପପ୍ରୟୋଗ କରିଥିବା ଦଲାଲମାନଙ୍କ ବିରୋଧରେ ମଧ୍ୟ ତାହାଠାରୁ ଅଧିକ କଠୋର ଦଣ୍ଡ ବିଧାନ କରିବାର ପ୍ରକୃଷ୍ଟ ସମୟ ଉପନୀତ ହୋଇଛି । ଏତଦ୍ୱାରା ହିଁ କେବଳ ଏହି ଦଲାଲମାନଙ୍କୁ ଦେଶଦ୍ରୋହୀ ବ୍ୟାପାରରୁ ନିବୃତ୍ତ କରାଯିବା ସମ୍ଭବ ହେବ ।

ଆମ ଦେଶରେ ସଂଘଟିତ ଏହି ସମସ୍ତ ଘଟଣାପ୍ରବାହ ସମ୍ପର୍କରେ ଜନସାଧାରଣ ସଚେତନ ରହିବା ଦ୍ୱାରା, ବୁଦ୍ଧିଜୀବୀମାନେ ଏପରି ହୀନ ମନୋଭାବାପନ୍ନ ବ୍ୟକ୍ତି ବା ଅନୁଷ୍ଠାନର କାର୍ଯ୍ୟକଳାପକୁ ଗଣମାଧ୍ୟମଗୁଡ଼ିକ ଜରିଆରେ ଠିକଣା ଭାବରେ ଲୋକଲୋଚନକୁ ଆଣିବା ଦ୍ୱାରା, ଦୁଷ୍ପ୍ରାପ୍ୟ ଅର୍ଥ ଓ ସୀମିତ ପ୍ରାକୃତିକ ସମ୍ବଳର ଅସଦୁପଯୋଗ କରି ପରିବେଶକୁ ପ୍ରଦୂଷିତ କରୁଥିବା ବ୍ୟକ୍ତି ବା ଅନୁଷ୍ଠାନଗୁଡ଼ିକୁ ନ୍ୟାୟାଳୟଗୁଡ଼ିକ ଦ୍ୱାରା ଅବିଳମ୍ବେ ଉପଯୁକ୍ତ ଶାସ୍ତି

ଦିଆଯିବା ଦ୍ୱାରା ଏବଂ ପର୍ଯ୍ୟାବରଣୀୟ ସନ୍ତ୍ରାସବାଦୀ ଭାବରେ କର୍ମପ୍ରବଣ ବ୍ୟକ୍ତିମାନଙ୍କ ପ୍ରତି କଠୋର ଦଣ୍ଡ ବିଧାନ କରାଯିବା ଦ୍ୱାରା ହିଁ ସମୟକ୍ରମେ କେବଳ ଆର୍ଥିକ ଲାଭ ବା ଆତ୍ମବଡ଼ିମା ପ୍ରଦର୍ଶନ ପାଇଁ ପ୍ରତିଷ୍ଠିତ ସେବାକାରୀ ଅନୁଷ୍ଠାନଗୁଡ଼ିକ ଆପେ ଆପେ ବନ୍ଦ ହୋଇଯିବ । ଜନସାଧାରଣ ଏମାନଙ୍କ ବାକ୍‌ଚାତୁରୀ, ବେଶଭୂଷା, ନାଲିଆଖି ଓ ଖଳ ଚକ୍ରାନ୍ତ ଦ୍ୱାରା ପ୍ରତାରିତ ହେବାର ଅବକାଶ ରହିବ ନାହିଁ ।

ଆମେ ଆଶା କରିବା ଯେ ଶିକ୍ଷାର ପ୍ରସାର, ଅତ୍ୟାଧୁନିକ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ସଦୁପଯୋଗ, ନୂଆ ନୂଆ ପ୍ରଶାସନିକ ଓ ପରିଚାଳନାଗତ କୌଶଳଗୁଡ଼ିକର ଉଦ୍ଭାବନ ଓ ସଫଳ ପ୍ରୟୋଗ, ଜନସାଧାରଣଙ୍କ ନବୀକରଣକ୍ଷମତାର (Innovativeness) ସଦୁପଯୋଗ ପ୍ରଭୃତି ବିଭାବଗୁଡ଼ିକୁ ଠିକଣା ଭାବରେ ବ୍ୟବହାର କରି ଏକବିଂଶ ଶତାବ୍ଦୀରେ କ୍ରମବର୍ଦ୍ଧମାନ ସଂଖ୍ୟାରେ ଦେଶହିତୈଷୀ ସେବାକାରୀ ଅନୁଷ୍ଠାନଗୁଡ଼ିକ ଉପଯୁକ୍ତ କର୍ମ-ପଦ୍ଧତି ଅବଲମ୍ବନରେ ଆମ ଦେଶର ପ୍ରଗତିଶୀଳତାର ପଥକୁ ତ୍ୱରାନ୍ୱିତ କରାଇବା ସଙ୍ଗେ ସଙ୍ଗେ ପରିବେଶ ଓ ପର୍ଯ୍ୟାବରଣର ସୁରକ୍ଷା ଓ ପରିପୋଷଣ ଦିଗରେ ମଧ୍ୟ ସମୟୋଚିତ ଠିକଣା ପଦକ୍ଷେପଗୁଡ଼ିକୁ କାର୍ଯ୍ୟକାରୀ କରାଇବାକୁ ସମର୍ଥ ହେବେ ।



## EPILOGUE

"The Earth provides enough to satisfy every man's needs,
but not every man's greed."



"The rich have a superfluous store of things
which they do not need and
which are, therefore, neglected and wasted,
while millions starve and are
frozen to death for want of them.
If each retained possessions of only what he needed,
none would be in want and all
would live in contentment.".



"The concern for man and his destiny must always be the
chief interest of all technical effort.
Never forget it between your
diagrams and equations."

MAHATMA GANDHI : Father of the Nation
: An Apostle of Applied Human Ecology

